ଚୟନିକା

ଲେଖକ :

ସ୍ୱର୍ଗତ ଭଗବାନ ମେହେର

ପ୍ରକାଶକ :

କବି ପରିବାର

ବରପାଲି

ପ୍ରଥମ ପ୍ରକାଶ :

ଏପ୍ରିଲ - ୧୯୯୨

ମୁଦ୍ରଣ :

ଏମ୍. ଆର୍. ପ୍ରେସ୍

ବରଗଡ଼

ମୂଲ୍ୟ : ପଚିଶ ଟଙ୍କା ମାତ୍ର

**CHAYANIKA**

By :

LATE BHAGABANA MEHER

Published by :

KABI PARIBAR

Barpali

First Edition :

APRIL - 1992

Printed at :

M. R. PRESS

Bargarh

PRICE : Rs. 25-00

ସ୍ୱର୍ଗତ ଭଗବାନ ମେହେର

| | | |
|---|---|---|
| ଆବିର୍ଭାବ : | | ତିରୋଧାନ : |
| ୧୯ - ୮ - ୧୮୯୨ |  | ୨୦ - ୧୨ - ୧୯୭୭ |

# ଭୂମିକା

ପରମାରାଧ୍ୟ ପିତାମହ କବି ଗଙ୍ଗାଧର ମେହେରଙ୍କ ସୁଯୋଗ୍ୟ ପୁତ୍ର ଭାବରେ ଆମର ପରମ ପୂଜ୍ୟ ପିତୃଦେବ ୬ ଭଗବାନ ମେହେର ଯେପରି ପବିତ୍ର ଓ ମହିମାମୟ ଜୀବନର ଆଦର୍ଶ ଅଙ୍କନ କରି ଲୋକହିତ ସକାଶେ ନିଜକୁ ସମର୍ପିତ କରିଥିଲେ, ତାହା ସମାଜର ପ୍ରାଜ୍ଞ, ବିବେକବନ୍ତ, ବିଚାର-ଶୀଳ ଓ ସଂସ୍କୃତିପ୍ରେମୀ ସହୃଦୟ ଲୋକଙ୍କ ଅନ୍ତରରେ ଗଭୀର ରେଖାପାତ କରୁଥିବା ଲକ୍ଷ୍ୟ କରାଯାଇଥିଲା ।

ଆମର ପୂଜ୍ୟ ପିତୃଦେବ ତରୁଣ ବୟସରୁ ନିଜ ପିତାଙ୍କ ଠାରୁ କବିତା ଲେଖିବାର ପ୍ରେରଣା ଲାଭ କରିଥିଲେ ଓ ତତ୍କାଳୀନ ପତ୍ର ପତ୍ରିକା ସମ୍ବଲପୁର ହିତୈଷିଣୀ, ସେବା, ଆଶା, ପ୍ରଜାତନ୍ତ୍ର, ଉତ୍କଳମଧୁପ ପ୍ରଭୃତିରେ ସେ ସବୁ ପ୍ରକାଶିତ ହେଉଥିଲା । କିନ୍ତୁ ପିତାମହଙ୍କ ତିରୋଧାନ ପରେ ବରପାଲିବାସୀଙ୍କ ଆଗ୍ରହ ଓ ଅନୁରୋଧ କ୍ରମେ ଏ ଅଞ୍ଚଳର ସାମାଜିକ ଓ ସାଂସ୍କୃତିକ କ୍ଷେତ୍ର ସହ ସେ ଘନିଷ୍ଠ ଭାବରେ ଜଡ଼ିତ ହୋଇ-ପଡ଼ିଥିଲେ । ପୁଣି ପିତାମହଙ୍କ କାବ୍ୟ କବିତାର ସଂଗ୍ରହ, ସଂପାଦନା, ପାଣ୍ଡୁଲିପି ପ୍ରସ୍ତୁତ ଓ ପ୍ରକାଶନ ତଥା ତାଙ୍କ ସ୍ମୃତି ସଂରକ୍ଷଣ ଆଦି କାର୍ଯ୍ୟରେ ତାଙ୍କର ସମୟ ଅତିବାହିତ ହେଉଥିଲା ।

ଏଠାରେ ଉଲ୍ଲେଖନୀୟ, ଉକ୍ତ ସାଧନାରେ ଅଭିନିବିଷ୍ଟ ତାଙ୍କ ସାରସ୍ୱତ ଚେତନା, ନିଜସ୍ୱ କବିତା-ସଂକଳନ - ପ୍ରକାଶନର ସ୍ୱପ୍ନରେ କେବେହେଲେ ଉଦ୍ବେଳିତ ହେବା ଦେଖାଯାଇ ନଥିଲା । କୌଣସି ଭଦ୍ରବ୍ୟକ୍ତିଙ୍କ ଠାରୁ ସେ ପ୍ରକାର ପ୍ରସ୍ତାବ ଆସିଲେ ନିଜ କବିତା ଗୁଡ଼ିକ ଉଚ୍ଚକୋଟୀର ବୋଲି ସେ ବିଚାରୁ ନଥିବାରୁ ସେସବୁ ପ୍ରସ୍ତାବକୁ ବିନମ୍ର ଭାବରେ ଏଡ଼ାଇ ଦେଉଥିଲେ ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟ ସାଧକ କବି ଡକ୍ଟର ମାୟାଧର ମାନସିଂହ ତଥା ଅନେକ ସାହିତ୍ୟିକ ଓ ମେହେର ସାହିତ୍ୟ ପ୍ରେମୀ ଓ ସୁଧୀବୃନ୍ଦଙ୍କ ଆନ୍ତରିକ ଅନୁରୋଧ କ୍ରମେ ସେ ଜୀବନର ଅନ୍ତିମ କାଳରେ

ତାଙ୍କ ପିତାଙ୍କ ଜୀବନୀ ( "ପିତୃପ୍ରସଙ୍ଗ" ) ସଙ୍କଳନ କରିଥିଲେ । କିନ୍ତୁ ପୁସ୍ତକଟିର ପ୍ରକାଶିତ ରୂପ ଦେଖିବା ପୂର୍ବରୁ ଆମ୍ଭମାନଙ୍କୁ ଶୋକାଭିଭୂତ କରି ସେ ସ୍ୱର୍ଗାରୋହଣ କଲେ ।

ପିତାମହଙ୍କ ରଚିତ ଅସମ୍ପୂର୍ଣ୍ଣ 'ପଦ୍ମିନୀ'କୁ ସମ୍ପୂର୍ଣ୍ଣ ଭାବରେ ଦେଖିବା ପାଇଁ ବହୁ ବିଦଗ୍ଧ ପାଠକ ଆନ୍ତରିକ ଅଭିଳାଷ ବ୍ୟକ୍ତ କରି-ବାରୁ ଉକ୍ତ କାବ୍ୟକୁ ପୂର୍ଣ୍ଣାଙ୍ଗ କରିବାର ପ୍ରୟାସ ମଧ୍ୟ ସେ କରିଛନ୍ତି, ଯାହାକି ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି ।

ପୂଜ୍ୟ ପିତୃଦେବଙ୍କ ରଚିତ କବିତାବଳୀକୁ ପୁସ୍ତକାକାରରେ ପ୍ରକାଶ କରିବା ପାଇଁ ଅନୁରାଗୀ ପାଠକଙ୍କ ଅନୁରୋଧ ଓ ପରାମର୍ଶ ବାରମ୍ବାର ଲାଭ କରି ଆସିଛୁ । ସେଥିପାଇଁ ଏହି ବର୍ଷ ପିତୃଦେବଙ୍କ ଜନ୍ମ ଶତବାର୍ଷିକୀ ପାଳନର ଶୁଭ ଅବସରରେ ତାଙ୍କ ପ୍ରକାଶିତ ଓ ଅପ୍ରକାଶିତ କବିତା ତଥା 'ପଦ୍ମିନୀ'ର ଶେଷଭାଗ 'ଚୟନିକା' ନାମରେ ପ୍ରକାଶ କରି ବିଦଗ୍ଧ ପାଠକମାନଙ୍କ ହାତରେ ଅର୍ପଣ କରୁଛୁ, ଏଥିରେ କୌଣସି ପ୍ରକାର ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହେଲେ ଉଦାର ହୃଦୟରେ କ୍ଷମା ପ୍ରଦାନ କରିବେ ବୋଲି ଆଶା ।

ଆମର ବନ୍ଧୁ ଓ ହିତୈଷୀମାନଙ୍କ ପରାମର୍ଶ କ୍ରମେ ପିତାଙ୍କ ସଂକ୍ଷିପ୍ତ ଜୀବନୀ, ଯାହାକି ଗଙ୍ଗାଧର ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ, ଏ ପୁସ୍ତକରେ ପାଠକମାନଙ୍କ ଅବଗତି ନିମନ୍ତେ ସନ୍ନିବିଷ୍ଟ କରାଯାଉଛି ।

ପରିଶେଷରେ ବକ୍ତବ୍ୟ ଏହିକି ଏହି ପୁସ୍ତକ-ପ୍ରକାଶନ ବିଷୟରେ ଅବଗତ ହୋଇ ଆମ ପରିବାରର ପରମ ହିତୈଷୀ ଶ୍ରୀଯୁକ୍ତ ବାବୁ ବଳଭଦ୍ର ପଧାନ ସ୍ୱତଃପ୍ରବୃତ୍ତ ହୋଇ ଏକ ହଜାର ଟଙ୍କାର ବ୍ୟୟ ଭାର ବହନ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିବାରୁ ତାଙ୍କ ନିକଟରେ ଆମେ ଘୋର ଭାବରେ କୃତଜ୍ଞ । ଏଥି ସହିତ ଅନ୍ୟାନ୍ୟ ଯେଉଁ ବନ୍ଧୁ ଓ ଶୁଭେଚ୍ଛୁବର୍ଗ ପୁସ୍ତକ ପ୍ରକାଶନ ପାଇଁ ଆମ୍ଭମାନଙ୍କୁ ପରାମର୍ଶ ଓ ପ୍ରେରଣା ଦେଇ ଆସିଛନ୍ତି ସେମାନଙ୍କୁ ଆମେ ସାଧୁବାଦ ଜଣାଉଛୁ ।

ବରପାଲି
ତା ୧୪ । ୩ । ୯୨  **ପୂର୍ଣ୍ଣଚନ୍ଦ୍ର ମେହେର**

# ସଂକ୍ଷିପ୍ତ ଜୀବନୀ

## ଜନ୍ମ ଓ ଶୈଶବ :

୧୮୯୬ ମସିହା ଅଗଷ୍ଟ ମାସ ୧୯ ତାରିଖ ଦିନ ଋଷି କବି ଗଙ୍ଗାଧର ମେହେରଙ୍କ କନିଷ୍ଠ ପୁତ୍ର ସନ୍ତାନ ରୂପେ ବରପାଲିରେ ଭଗବାନ ମେହେର ଜନ୍ମ ଗ୍ରହଣ କରିଥିଲେ । ପିତା ଗଙ୍ଗାଧର ମେହେର ଓ ମା' ଶାନ୍ତା ଦେବୀଙ୍କ ସ୍ନେହ ଯତ୍ନ ଲାଭ କରି ଜ୍ୟେଷ୍ଠା ଦୁଇ ଭଗିନୀ ଓ ଜ୍ୟେଷ୍ଠ ଭ୍ରାତା ଅର୍ଜୁନଙ୍କ ସହ ତାଙ୍କ ଜୀବନ ଅତିବାହିତ ହେଉଥିଲା ଆନନ୍ଦରେ । ମାତ୍ର ତାଙ୍କୁ ଯେତେବେଳେ ପାଞ୍ଚବର୍ଷ ବୟସ ସେତେବେଳେ ସ୍ନେହମୟୀ ମା'ଙ୍କୁ ହରାଇ ମା'ଙ୍କ ସ୍ନେହରୁ ସେ ହେଲେ ବଞ୍ଚିତ । ତାଙ୍କୁ ମଧ୍ୟ ହରାଇ-ବାକୁ ହେଲା ତାଙ୍କ ବଡ଼ଭାଇ ଅର୍ଜୁନଙ୍କୁ । ତେଣୁ ତେବେଠୁ ପିତାଙ୍କ ସମସ୍ତ ସ୍ନେହ ଓ ଆଦର ସେ ଲାଭ କରିଥିଲେ । ବାଲ୍ୟକାଳରୁ ଅତି ଧୀର ଓ ନମ୍ର ଥିଲେ ସେ ।

## ଶିକ୍ଷା :

ଛଅବର୍ଷ ବୟସରୁ ସେ ସ୍ଥାନୀୟ ସ୍କୁଲରେ ଅଧ୍ୟୟନ କରିଥିଲେ । ଶାରୀରିକ ଅସୁସ୍ଥତା, ମାନସିକ କ୍ଳେଶ, ସରକାରୀ କର୍ମରେ ବିଭିନ୍ନ ସ୍ଥାନକୁ ପିତାଙ୍କ ପରିବର୍ତ୍ତନ ଆଦି କାରଣରୁ ତାଙ୍କ ଅଧ୍ୟୟନରେ ନାନା ବିଘ୍ନ ଘଟୁଥିଲା, ତଥାପି ଭଣ୍ଡାକୁଲର ମିଡ଼ିଲ ସ୍କୁଲରେ ନିୟମିତ ଅଧ୍ୟୟନ କରି ଷଷ୍ଠଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । କେତେକ କାରଣରୁ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇଥିଲେ ହେଁ ପିତାଙ୍କ ନିର୍ଦ୍ଦେଶ କ୍ରମେ ବିଭିନ୍ନ ଭାଷା ଶିକ୍ଷା କରି ଏବଂ ପିତାଙ୍କ ସ୍ନେହ, ଯତ୍ନ ଓ ତତ୍ତ୍ୱାବଧାନରେ ବିଭିନ୍ନ କାବ୍ୟ କବିତା ଓ ଉପାଦେୟ ପୁସ୍ତକ ଅଧ୍ୟୟନ ଫଳରେ ସେ ପ୍ରକୃତ ଶିକ୍ଷାର ଅଧିକାରୀ ହୋଇ ପାରିଥିଲେ ।

୧୯୧୧ ମସିହାରେ ତାଙ୍କର ବିବାହ ହୋଇଥିଲା । ରେମଣ୍ଡା ଗ୍ରାମର କନ୍ୟା ପାର୍ବତୀଙ୍କୁ କୁଳବଧୂ ରୂପେ ପାଇ କବି ପରିବାର ଯେପରି ଧନ୍ୟ ହୋଇଥିଲା । ପାର୍ବତୀ ଦେବୀ ଥିଲେ ଅତ୍ୟନ୍ତ ସ୍ନେହମୟୀ ଓ ଧର୍ମପରାୟଣା । ତାଙ୍କ ସେବାପରାୟଣତା ସ୍ୱୟଂ କବି ଗୋଧରଙ୍କ ପାଇଁ ଥିଲା ଅତ୍ୟନ୍ତ ଆହ୍ଲାଦଦାୟକ ।

## କବି ଗଙ୍ଗାଧରଙ୍କ କାବ୍ୟ କବିତାର ପ୍ରତିଲିପି ପ୍ରସ୍ତୁତ :

ଏକଦା ସେ ଦୀର୍ଘକାଳ ଧରି ପିଡ଼ାଗ୍ରସ୍ତ ହୋଇ ପଡ଼ିଥିଲେ । କିନ୍ତୁ ପିତାଙ୍କ ସାଧନା ଓ ପ୍ରାର୍ଥନା ପୁଅଙ୍କୁ ମୃତ୍ୟୁ ମୁଖରୁ ଫେରାଇ ଆଣିଲା ଯେପରି, ଏବଂ ତାହା ଥିଲା ଭଗବାନ ମେହେରଙ୍କ ପୁନର୍ଜନ୍ମ ସଦୃଶ । ଆରୋଗ୍ୟ ଲାଭ କରିବା ପରେ ପିତାଙ୍କ ନିର୍ଦ୍ଦେଶ କ୍ରମେ ତାଙ୍କ କାବ୍ୟ କବିତାର ପାଣ୍ଡୁଲିପି ନିଷ୍ଠାର ସହ ପ୍ରସ୍ତୁତ କରୁ କରୁ ସେହି ମହତ୍ କର୍ମରେ ସେ ସ୍ୱତଃ ହୋଇଗଲେ ସମର୍ପିତ । 'ପିତା ଧର୍ମ ପିତା ସ୍ୱର୍ଗ ପିତାଃ ହି ପରମ ତପଃ'-ଏହାହିଁ ଯେପରି ଥିଲା ତାଙ୍କ ଜୀବନର ମହାମନ୍ତ୍ର । ପିତାଙ୍କୁ ଭକ୍ତି କରୁଥିଲେ ସେ ଜୀବନ୍ତ ଦେବତା ରୂପେ ।

## ସାହିତ୍ୟ ସେବା :

କବି ଗଙ୍ଗାଧର ମେହେରଙ୍କ କୃତି ଗୁଡ଼ିକୁ ଅନ୍ତର ସହ ହୃଦୟର ଭକ୍ତି ଓ ସମ୍ମାନ ଦେଇ ତାର ପ୍ରତିଲିପି ପ୍ରସ୍ତୁତ କରିବା, ପିତାଙ୍କ ସମ୍ମୁଖରେ ନିଜ ହୃଦୟର ଭାବ ବ୍ୟକ୍ତ କରି ପିତାଙ୍କୁ ସାହିତ୍ୟ-ସୃଷ୍ଟି ପାଇଁ ଅନୁରୋଧ ଜଣାଇବା ଏବଂ ଗଙ୍ଗାଧର ଗ୍ରନ୍ଥାବଳୀର ସମ୍ପାଦନ ଓ ପ୍ରକାଶନ ଇତ୍ୟାଦି କାର୍ଯ୍ୟ ସହିତ ସେ ନିଜେ ମଧ୍ୟ ଲେଖୁଥିଲେ କବିତା ଓ ପ୍ରବନ୍ଧ । କାରଣ ସେ ଥିଲେ ଜଣେ ସୃଜନଶୀଳ ସାହିତ୍ୟ ସାଧକ । ତାଙ୍କର କବିତା ତତ୍କାଳୀନ ପତ୍ର ପତ୍ରିକା ସମ୍ବଲପୁର ହିତୈଷିଣୀ, ସେବା, ଆଶା, କୋଶଳଖଣ୍ଡ,ଉତ୍କଳମଧୁପ ଆଦିରେ ପ୍ରକାଶିତ ହେଉଥିଲା ମଧ୍ୟ । ସେ ଅନେକ କବିତା ରଚନା କରିଥିଲେ ହେଁ ଶେଷ ଜୀବନରେ ତାଙ୍କ ଦ୍ୱାରା ସଙ୍କଳିତ ପିତାଙ୍କ ଜୀବନୀ **'ପିତୃ-ପ୍ରସଙ୍ଗ'** ତାଙ୍କର ଶ୍ରେଷ୍ଠ କୃତି ବୋଲି କହିବାକୁ ହେବ । ପିତା କବି ଗଙ୍ଗାଧରଙ୍କ ଅସମ୍ପୂର୍ଣ୍ଣ କାବ୍ୟ **'ପଦ୍ମିନୀ'** କୁ ସେ ସମ୍ପୂର୍ଣ୍ଣ କରିଥିଲେ ।

## ସମାଜ ସେବା :

କବି ଗଙ୍ଗାଧରଙ୍କ ତିରୋଧାନ ପରେ ବରପାଲିର ସମସ୍ତ ଅନୁଷ୍ଠାନ ସହ ତାଙ୍କୁ ସଂପୃକ୍ତ ହେବାକୁ ପଡ଼ିଥିଲା । ପିତାଙ୍କ ପରି ସମାଜର ସେବାରେ ସେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଥିଲେ । ବରପାଲି ବାଳିକା ହାଇସ୍କୁଲ ଓ ବାଳକ ମାଇନର ସ୍କୁଲର ସମ୍ପାଦକ ଭାବରେ ସେ କାର୍ଯ୍ୟ କରି-ଥିଲେ । ସେ ଥିଲେ ବରପାଲି ଗ୍ରାମ ପଞ୍ଚାୟତର ସର୍ବ ପ୍ରଥମ ସରପଞ୍ଚ, ଗ୍ରେନ୍-ଗୋଲାର ପ୍ରଥମ ସଭାପତି, ବରପାଲି ବ୍ଲକ୍‌ର ମଧ୍ୟ ସେ ଥିଲେ ପ୍ରଥମ ଚେଆରମେନ୍ । ବରପାଲି କଲେଜର ଉଦ୍ୟୋକ୍ତାମାନଂକ ମଧ୍ୟରେ ସେ ଥିଲେ ଅନ୍ୟତମ । ବାଳକ ହାଇସ୍କୁଲର ଉନ୍ନତି ସକାଶେ ମଧ୍ୟ ତାଂକ ଅବଦାନ ଉଲ୍ଲେଖଯୋଗ୍ୟ । ସେ କିଛି ଦିନ କୋର୍ଟରେ ଅନ୍ୟତମ ଏସେ-ସର୍ [Assessor] ଭାବରେ ମଧ୍ୟ ସରକାରଂକ ଦ୍ୱାରା ନିଯୁକ୍ତ ହୋଇ-ଥିଲେ । ପ୍ରତ୍ୟେକ କର୍ମ, ଯାହା ସେ ହାତକୁ ନେଉଥିଲେ, ତାହା ତାଂକର କର୍ତ୍ତବ୍ୟବତ୍ତା, ସହନଶୀଳତା ଓ ଆନ୍ତରିକ ନିଷ୍ଠାଫଳରେ ସୁନ୍ଦର ଓ ସୁସଂଗଠିତ ହୋଇ ଉଠୁଥିଲା ।

## ସ୍ୱଭାବ ଚରିତ୍ର :

ଭଗବାନ ମେହେର ଥିଲେ ଜଣେ ନିରଭିମାନୀ, ସରଳ ନମ୍ର ଓ ପ୍ରକୃତ ଅର୍ଥରେ ଜଣେ ଆମାର୍ଯ୍ୟିକ ଭଦ୍ରବ୍ୟକ୍ତି । ତାଂକର ସାଧୁତା ଓ ସରଳ ଭଦ୍ରଜନୋଚିତ ଶିଷ୍ଟାଚାର ପୂର୍ଣ୍ଣ ବ୍ୟବହାର ସମସ୍ତଙ୍କୁ ଆକୃଷ୍ଟ ଓ ପ୍ରଭାବିତ କରୁଥିଲା । ସେ ଥିଲେ ଉଚ୍ଚ ଓ ଗୌରବଶାଳୀ ମର୍ଯ୍ୟାଦାର ପରିପୋଷକ । ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ସେ ଯେଉଁ ଉଚ୍ଚ ମର୍ଯ୍ୟାଦା ପାଳନ କରୁଥିଲେ ତାହା ଏ ଯୁଗରେ ଦୁର୍ଲ୍ଲଭ । କାହାରି ନିନ୍ଦା ବା ଅପବାଦ ସେ କରୁ ନଥିଲେ କି ଶୁଣୁ ନଥିଲେ । କେହି ତାଂକର ନିନ୍ଦା ବା ଅପବାଦ କରିବା ଶୁଣିଲେ ମଧ୍ୟ ସେ ଶାନ୍ତ ଓ ନୀରବ ରହୁଥିଲେ । ଏପରିକି ତାଂକର ନିନ୍ଦୁକ କେହି ଅସୁବିଧାରେ ପଡ଼ି ତାଂକ ନିକଟକୁ ଆସିଲେ ସେ ସହାନୁଭୂତି ପ୍ରଦର୍ଶନ ପୂର୍ବକ ତାର ଦୁଃଖ ମୋଚନ ପାଇଁ ସୁପରାମର୍ଶ ଦେବାରେ କୁଣ୍ଠିତ ହେଉ ନଥିଲେ । ବିରୋଧୀ ମତବାଦ

ଆଗରେ ମଧ୍ୟ ସେ ଶାନ୍ତ ଓ ନିର୍ଭୀକ ରହି ନିଜର ଯଥା କର୍ତ୍ତବ୍ୟ ସମ୍ପାଦନ କରି ଯାଉଥିଲେ । କେହି ତାଙ୍କୁ ତାଙ୍କ ସମ୍ମୁଖରେ ପ୍ରଶଂସା କଲେ ସେ ସଙ୍କୁଚିତ ବୋଧ କରୁଥିଲେ ଓ ତାହାକୁ ସ୍ୱାଭାବିକ ଭାବରେ ଏଡ଼ାଇ ଯାଉଥିଲେ । ବହୁଲୋକ ନିଜ ନିଜର ବ୍ୟକ୍ତିଗତ, ପାରିବାରିକ ବା ଆନୁଷ୍ଠାନିକ ସମସ୍ୟା ନେଇ ତାଙ୍କ ପାଖକୁ ଆସୁଥିଲେ । ସେ ସମସ୍ତଙ୍କ କଥା ଖୁବ୍ ସହାନୁଭୂତିଶୀଳ ହୋଇ ଶୁଣୁଥିଲେ ଓ ନମ୍ର ଭାବରେ ସୁଚିନ୍ତିତ ପରାମର୍ଶ ଦେଉଥିଲେ । ଅତି ଗୁରୁତ୍ୱପୂର୍ଣ୍ଣ ସମସ୍ୟାମାନଙ୍କୁ ଖୁବ୍ ସହଜ ଓ ସ୍ୱାଭାବିକ ଭାବରେ ସମାଧାନ କରିପାରିବା ତାଂକ ବ୍ୟକ୍ତିତ୍ୱ ଓ ଦକ୍ଷତାର ଏକ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ । ବରପାଲିର ବହୁ ବ୍ୟକ୍ତି ଓ ପରିବାର ତାଙ୍କୁ ନିଜର ଆତ୍ମୀୟ ଓ ହିତୈଷୀ ଭାବରେ ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ ।

**କବି ଗଙ୍ଗାଧରଙ୍କ ସ୍ମୃତି ରକ୍ଷା :**

କବିଂକ ସ୍ମୃତିରକ୍ଷା ସକାଶେ ବରପାଲିରେ ଯେତେ କାର୍ଯ୍ୟ ହୋଇଛି ବରପାଲିବାସୀଂକ ଆଗ୍ରହ ଓ ଅନୁରୋଧ କ୍ରମେ ସେ ସବୁଥିରେ ସଂପୃକ୍ତ ଥିଲେ । କବିଂକ ସମାଧି ସ୍ତମ୍ଭ ଓ ଗଙ୍ଗାଧର ସ୍ମୃତି ଭବନ ନିର୍ମାଣ ତଥା ମାର୍ବଲ ଷ୍ଟେଚ୍ୟୁ ସ୍ଥାପନ ଆଦି କାର୍ଯ୍ୟରେ ତାଂକର ସୂକ୍ଷ୍ମ ସଫଳ ରୂପାୟନକୁ ଅନୁଭବ କରିହୁଏ । ଓଡ଼ିଶା ସରକାରଂକ ଅନୁରୋଧ କ୍ରମେ ୧୯୭୯ ମସିହାରେ କବିଂକ ତଥା ନିଜର ଜନ୍ମ ଗୃହକୁ ଜାତୀୟ-ସମ୍ପତ୍ତି ଭାବରେ ସଂରକ୍ଷିତ କରି ରଖିବାପାଇଁ ସରକାରଂକ ହାତକୁ ସେ ଟେକି ଦେଇଥିଲେ ।

କବି ଗଙ୍ଗାଧରଂକ ବ୍ୟବହୃତ ହସ୍ତଚିତ୍ର, କଠାଉ, ଚୌକି, କୋଟ, କାମିଜ, ଦୁଆତ କଲମ, କବିଂକ ପାଖକୁ ଆସିଥିବା କବିବର ରାଧାନାଥ, ବ୍ୟାସକବି ଫକୀରମୋହନ, ଭକ୍ତକବି ମଧୁସୂଦନ, ପଲ୍ଲୀକବି ନନ୍ଦକିଶୋର, ବାଗ୍ମୀ ବିଶ୍ୱନାଥ କର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଓ ଆହୁରି ଅନେକ କବି ତଥା ସାହିତ୍ୟିକଂକ ମୂଲ୍ୟବାନ ପତ୍ରାବଳୀ ତଥା ଗଙ୍ଗାଧରଙ୍କ କାବ୍ୟ କବିତାର ଦୁର୍ଲଭ ପାଣ୍ଡୁଲିପିମାନ ସଯତ୍ନରେ ସେ ସାଇତି ରଖିଥିଲେ ଯାହାକି ଏ ପର୍ଯ୍ୟନ୍ତ କବି ପରିବାରଙ୍କ ଦ୍ୱାରା ଯତ୍ନର ସହ ସଂରକ୍ଷିତ ।

## ପାରିବାରିକ ଜୀବନ :

ରଷିକଲ୍ପ ପିତାଙ୍କର ସେ ଯେପରି ଥିଲେ ଯୋଗ୍ୟତମ ପୁତ୍ର । ଗୃହକୁ ଏକ ଆଶ୍ରମ ଭାବରେ ଗଢ଼ିବାର ପ୍ରେରଣା ସେ ପାଇଥିଲେ ନିଜ ପିତାଙ୍କ ଠାରୁ । ଆର୍ଥିକ ଦିଗରେ ତାଙ୍କ ଅବସ୍ଥା ସ୍ୱଚ୍ଛଳ ନ ଥିଲେ ହେଁ ପରିବାରର ପ୍ରତ୍ୟେକଙ୍କ ସମସ୍ୟା ପ୍ରତି ସେ ସର୍ବଦା ସଚେତନ ଥିଲେ ଓ ପରିବାରର ସମସ୍ତଙ୍କ ସୁଖ ସୁବିଧା ପ୍ରତି ସମଦୃଷ୍ଟି ରଖି ସାଧୁତା, ସଂଯମ ତଥା ଆତ୍ମ-ସମ୍ମାନ ରକ୍ଷା ପୂର୍ବକ ସଂସାର ଚଳାଇବା ଦିଗରେ ପିତାଙ୍କ ନୀତି ଅନୁ-ସରଣ କରି ଚାଲିଥିଲେ, ଯାହା ଫଳରେ ସେ ଏକ ଆଦର୍ଶ ପରିବାରର ଗଠନ କରିବାରେ ସମର୍ଥ ହୋଇଥିଲେ ।

ଗୃହ ପରିଚାଳନା ଓ କୃଷି କାର୍ଯ୍ୟରେ ସେ ଥିଲେ ପିତାଙ୍କର ଏକମାତ୍ର ସହଯୋଗୀ । ତେଣୁ କବି ବରପାଲି ବାହାରେ ଚାକିରି ଜୀବନ ଅତିବାହିତ କରିବା ସମୟରେ ସେ ବରପାଲିର ଘର ତଥା ଚାଷଜମିର ସଂପୂର୍ଣ୍ଣ ଦାୟିତ୍ୱ ବହନ କରୁଥିଲେ ।

ତାଙ୍କର ଚାରୋଟି ପୁତ୍ର ଓ ତିନୋଟି କନ୍ୟାଙ୍କୁ ଅତି ଯତ୍ନରେ ସେ ବଢ଼ାଇ ଥିଲେ । ନାତି ନାତୁଣୀଙ୍କୁ ମଧ୍ୟ ସେ ସ୍ନେହ କରୁଥିଲେ ନିବିଡ଼ ଭାବରେ । ପରିବାରସ୍ଥ ସମସ୍ତଙ୍କ ପ୍ରତି ତାଙ୍କର ମମତା ଧାରା ଥିଲା ସମ-ଭାବରେ ଉନ୍ମୁକ୍ତ, ତେଣୁ ସମସ୍ତେ ତାଙ୍କର ସ୍ନେହସିକ୍ତ ନିର୍ଦ୍ଦେଶ ପାଳନରେ କେବେହେଁ ଦ୍ୱିଧା କରୁ ନଥିଲେ ।

ଗଛ ଲଗାଇବାରେ ସେ ଅତୁଳ ଆନନ୍ଦ ଲଭୁଥିଲେ । ବୃକ୍ଷ ଗୁଡ଼ିକର ଶାଖା ପ୍ରଶାଖା, ବିପୁଳ ସବୁଜ ପତ୍ର ଓ ପ୍ରସ୍ଫୁଟିତ ପୁଷ୍ପର ସମା-ରୋହ, ତଥା ବନ ପର୍ବତର ଶ୍ୟାମଳ ଶୋଭାରେ ସେ ଅଭିଭୂତ ହେବାର ଦେଖାଯାଉଥିଲା ।

ପଶୁପକ୍ଷୀଙ୍କ ପ୍ରତି ଥିଲା ତାଙ୍କର ଗଭୀର ସ୍ନେହ । ସେ ବରାବର ଗୃହରେ ପାଳିତ ଗାଈଗୋରୁଙ୍କ ତତ୍ତ୍ୱ ନେଉଥିଲେ । ନବଜାତ ବାଛୁରୀ-ଟିଏ ଦେଖିଲେ ସେ ଆନନ୍ଦିତ ହୋଇ ଉଠୁଥିଲେ ।

## ସାରସ୍ୱତ ସଂପର୍କ :

କବିପୁତ୍ର ଭାବରେ କବିଙ୍କ ସହ ସଂପର୍କ ଥିବା ଓଡ଼ିଶାର ପ୍ରସିଦ୍ଧ ସାହିତ୍ୟିକ ଓ କବିଙ୍କ ସହ ତାଙ୍କର ମଧ୍ୟ ସଂପର୍କ ରହିଥିଲା । କବି ନନ୍ଦକିଶୋର ବଳ, ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ, ଗୋପାଳ ଚନ୍ଦ୍ର ପ୍ରହରାଜ, ଶଶିଭୂଷଣ ରାୟ, ବ୍ରଜମୋହନ ପଣ୍ଡା, ପଣ୍ଡିତ ମାଧବ ମିଶ୍ର ଓ ସ୍ୱାଧୀନତା ସଂଗ୍ରାମୀ ଭାଗିରଥି ପଟ୍ଟନାୟକଙ୍କ ସହ ତାଙ୍କର ସଂପର୍କ ଅତି ଆନ୍ତରିକ ଥିଲା । ସୁସାହିତ୍ୟିକ ରାମଚନ୍ଦ୍ରପ୍ରସାଦ ସିଂହ, ଡକ୍ଟର ମାୟାଧର ମାନସିଂହ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର କାଳନ୍ଦୀ ଚରଣ ପାଣିଗ୍ରାହୀ ପ୍ରଭୃତିଙ୍କ ସହ ମଧ୍ୟ ତାଙ୍କର ସୁସମ୍ପର୍କ ରହିଥିଲା । ନୋବେଲ ପୁରସ୍କାର ବିଜୟିନୀ ଲେଖିକା ପାର୍ଲ. ଏସ୍. ବକ୍‌ଙ୍କ ସହ ତାଙ୍କର ପତ୍ରାଳାପ ଥିଲା । ଓଡ଼ିଶା ଓ ଓଡ଼ିଶା ବାହାରୁ ଯେଉଁମାନେ କବି ଗଙ୍ଗାଧରଙ୍କ ଜନ୍ମମାଟିକୁ ସ୍ପର୍ଶ କରିବା ପାଇଁ ଆସୁଥିଲେ, ସେମାନେ ସମସ୍ତେ କବିପୁତ୍ରଙ୍କ ହୃଦୟର ଆତ୍ମୀୟ ସ୍ନିଗ୍ଧ ମଧୁର ସ୍ପର୍ଶ ପାଇ ମୁଗ୍ଧ ହେଉଥିଲେ ।

## ସମ୍ବର୍ଦ୍ଧନା ଲାଭ :

୧୯୭୨ ମସିହାରେ ସାହିତ୍ୟ ପ୍ରତି ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନ ହେତୁ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ମାନପତ୍ର ପ୍ରଦାନ କରାଯାଇ ତାଙ୍କୁ ସମ୍ମାନିତ କରାଯାଇଥିଲା । ସେହିପରି ୧୯୭୬ ମସିହାରେ ଉତ୍କଳ ଦିବସ ପାଳନ ଅବସରରେ ରାଉରକେଲାର 'ପ୍ରଗତି ଉତ୍କଳ ସଙ୍ଘ' ପକ୍ଷରୁ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏହା ବ୍ୟତୀତ ଅନେକ ଅନୁଷ୍ଠାନ ମଧ୍ୟ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ ।

## ମହାପ୍ରୟାଣ :

ସାହିତ୍ୟ ଓ ସମାଜର ହିତ ସକାଶେ ନମ୍ର ଓ ନୀରବ ଭାବରେ ନିଜକୁ ସମର୍ପିତ କରିଥିବା କବିପୁତ୍ର ଭଗବାନ ମେହେର ନୀରବ ଭାବରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ତା ୨୦-୧୨-୧୯୭୭ ଦିନ ।

ସେ ଆଜ ନାହାନ୍ତି । ମାତ୍ର ନିଜର ପ୍ରତିଷ୍ଠା ପାଇଁ ନୁହେଁ-ଅନ୍ୟର ହିତ ପାଇଁ ହିଁ ସେ ଯେପରି ନିରନ୍ତର ନୀରବରେ ସାଧନା କରୁଥିଲେ, ପିତାଙ୍କ ପାଇଁ ନିଜକୁ ଯେପରି ସେ ସମ୍ପୂର୍ଣ୍ଣ ସମର୍ପିତ କରିଥିଲେ ଏବଂ ତାଙ୍କର ଆଦର୍ଶରେ ସେ ସମାଜ ଓ ସାହିତ୍ୟର ଯେପରି ସେବା କରି-ଯାଇଛନ୍ତି, ତହିଁପାଇଁ ଆଜ ବହୁ ଗୁଣଗ୍ରାହୀ, ଦରଦୀ ଓ ସହୃଦୟ ମଣିଷଙ୍କ ଅନ୍ତରରେ ସେ ବିଦ୍ୟମାନ ରହିଛନ୍ତି ।

□ □ □

## —□ ସୂଚୀପତ୍ର □—

| | କବିତା | ପୃଷ୍ଠା |
|---|---|---|

| ସନେଟ୍ : | | ପୃଷ୍ଠା |
|---|---|---|
| ୨୩ | ସୁଗାନ୍ଧ | ୫୩ |
| ୨୪ | ବିଶ୍ୱବିଦ୍ୟାଳୟ | ୫୪ |
| ୨୫ | ଟିଙ୍କ | ୫୫ |
| ୨୬ | ବିବେକୀ ବନ୍ଧୁ | ୫୬ |
| ୨୭ | ମହତ୍ତ୍ୱ | ୫୭ |
| ୨୮ | ଜ୍ଞାନ | ୫୮ |
| ୨୯ | ଚନ୍ଦ୍ର ସୂର୍ଯ୍ୟ | ୫୯ |
| ୩୦ | ଜଳଦ | ୬୦ |
| ୩୧ | ଈର୍ଷ୍ୟାପ୍ରତ | ୬୧ |
| ୩୨ | ସମସ୍ତ | ୬୨ |
| ୩୩ | କଳ୍ପନା | ୬୩ |
| ୩୪ | ପରିଚୟ | ୬୪ |
| ୩୫ | ମହାପଙ୍କ | ୬୫ |
| ୩୬ | ବଡ଼ ସ୍ଥାନ | ୬୬ |
| ୩୭ | ବିନୟ ପ୍ରାର୍ଥନା | ୬୭ |
| ୩୮ | ମାଗୁଣି | ୬୮ |
| ୩୯ | ପରିଚୟ | ୬୯ |
| ୪୦ | ହେ ଜଗତ ପତି | ୭୦ |
| ୪୧ | ପଦ୍ମନୀ | ୭୧ |



# ସନ୍ଧ୍ୟା

ଅସ୍ତ ଦିବାକର କର-ବାସ ପିନ୍ଧି ଦେଖ ଆସିଲାଣି ସନ୍ଧ୍ୟା
ଅଟଇ କିବା ସେ ଗୈରିକ-ବସନା-ଯୋଗିନୀ ଜଗତ-ବନ୍ଦ୍ୟା ?
ଜ୍ଞାନ ସଙ୍ଗେ ସଙ୍ଗେ ହୃଦୟେ ବିବେକ ସଜାଗ ହେଲା ପରାଏ
ସନ୍ଧ୍ୟାସହ ଚନ୍ଦ୍ର-ମଣ୍ଡଳ ଆକାଶେ ଉଦିତ ଉଜ୍ଜ୍ୱଳ କାୟେ ।
ଶୁଭ ସବୁ ଯଥା ଆସିଯାଏ ଭାଗ୍ୟ ହୁଅଇ ଯେବେ ପ୍ରସନ୍ନ,
ସେହି ରୂପେ ଆହା ପଡ଼ୁଅଛି ଦେଖ ଚୌଦିଗେ ଚନ୍ଦ୍ର-କିରଣ !
ସାଧୁ ସଙ୍ଗ ସାଧୁ ଲଭିଲେ ହୁଅଇ ମନେ ମନେ ଯେହ୍ନେ ମୁଦ,
କୌମୁଦୀକୁ ପାଇ ସେହିପରି ହୋଇ ଯାଉଛି ସରେ କୁମୁଦ ।
ପର ଶିରି ଦେଖି ଦୁଃଖିତ ହୁଅନ୍ତି ଯେ ଭାବେ ମତ୍ସରୀ ଜନ
ଦେଖେ ସେହି ଭଳି ଯାଆନ୍ତି ମଉଳି ଜଳାଶୟେ ପଦ୍ମବନ ।
ସୁରାଜ ରାଜତ୍ୱେ ଧନେ ଜନେ ପ୍ରଜାମଣ୍ଡଳ ଥାନ୍ତି ଯେପରି
ବଲ୍ଲୀବିଟପିଏ ବସନ୍ତେ ଯେପରି ପ୍ରଫୁଲ୍ଲିତ ଫୁଲ ଧରି
ଗୁଣଗ୍ରାହୀଜନ ଗୁଣୀଜନଗଣେ ଯଥା କରୁଥାନ୍ତି ମାନ୍ୟ
ପୁଷ୍ପିତ ପାଦପେ ଅଳି ପଟଳକୁ କରନ୍ତି ତଥା ସମ୍ମାନ ।
ରକ୍ତବର୍ଣ୍ଣହୀନ ବାଦଲପଟଳ ତପନ କିରଣ ଲଭି
ପ୍ରତୀଚୀ ଗଗନ ପଟେ ଧରି ଅଛି କେଡ଼େ ମନୋହର ଛବି ।
ଧନହୀନ ଯେବେ ଧନିକ ପ୍ରଦେଶେ ଯାଇ କରିଥାଏ ବାସ
ଧନୀ ଅନୁଗ୍ରହେ ପୂର୍ଣ୍ଣ ନ ହୁଅଇ ତାହାର କେଉଁ ସୁଆଶ !



# ବର୍ଷା

ଭୀମକାନ୍ତ ବେଶେ ସାଜ ସଂଭ୍ରମନେ
ଆସିଲା ବରଷା ଜୀମୂତ ବାହନେ ।
ଘିଡ଼ ଘିଡ଼ ରଡ଼ ଘୁଡ଼ ଘନେ ଘନେ
ଜଳଦ ପଟଳ କର୍ମିଲେ ଗଗନେ ।
ତହିଁ ମଧ୍ୟେ କଲେ ସୌଦାମିନୀ କେଳି
ଫୁଟି ଉଠିଲା କି ସହସ୍ର ହାବେଳୀ ?
ସେ ସ୍ୱନ ଶ୍ରବଣେ ହେଲେ ଥର ଥର
ଭୀରୁକ ସ୍ୱଭାବା ଦିଗ୍‌ବଧୂନିକର ।
ଶୀତ ବାତ ଖରେ ହୋଇ ପ୍ରବାହିତ
ବୃକ୍ଷ ବଲ୍ଲୀଚୟ କଲା ପ୍ରକମ୍ପିତ ।
ପ୍ରକୃତିସ୍ଥମାନ ନରଙ୍କୁ ଯେସନ
ରିପୁଏ କରନ୍ତ ବିଚଳିତ ମନ ।
ସମୀର ସଙ୍ଗତେ ଧାଇଁ ମେଘସ୍ତର
ଅବଶେଷେ ହେଲେ ସ୍ତନିତ ଅନ୍ତର ।
ସ୍ୱେଦ ଛଳେ ତାଙ୍କ ଅଙ୍ଗରୁଁ ଜଳ
ବହି ମହୀତଳ କଲା ସୁଶୀତଳ ।
ନାଚିଲେ ଆକାଶେ ସାରଙ୍ଗ(୧) ସଂହତି
ଧରଣେ ନାଚିଲେ ସାରସ ଦମ୍ପତି ।
ବର୍ହିବୃନ୍ଦ କେଳି କଲେ ଗିରି ଶିରେ
ଆନନ୍ଦେ କ୍ରୀଡ଼ିଲେ ଜମ୍ବୁବନେ କୀରେ (୨) ।
ତୃଣଶସ୍ୟାଙ୍କୁରେ ଧରଣୀ ଶ୍ୟାମଳ
ଶ୍ୟାମଳ ଗଗନେ ଚଳ ମେଘଦଳ ।
ନବ ଜଳେ ପୂରି ହ୍ରଦ ସରୋବର
ନବ ଶ୍ୟାମ ରୂପେ ଦିଶେ ମନୋହର ।

ତେଜ ବିଷ୍ଣୁଙ୍କର ଅଙ୍କ ସିଂହାସନ
ଜଳେ ସ୍ଥଳେ ଲକ୍ଷ୍ମୀ କରନ୍ତି ଭ୍ରମଣ ।
କେଦାରେ କେଦାରେ କୃଷକ ସଂଗୀତ
ଉଠି ମନ ପ୍ରାଣ କଲା ପୁଲକିତ ।
ତଟ ପ୍ଲାବି ତଟୀ ହେଲା ଭୟଙ୍କର
ଭୀଷଣ ଆବେଗେ ବହିଲା ଶମ୍ବର (୩) ।
ଆହା କି ସୁନ୍ଦର ଦିଶେ ବନସ୍ଥଳୀ
କି ସୁନ୍ଦରେ ଫୁଟିଛନ୍ତି ପୁଷ୍ପାବଳୀ ।
ଭକତ ହୃଦୟେ ଭକତି ଯେସନ
ଅବା ଦିବେ ଯଥା ଦେବ ବାଳାଗଣ ।
ଧନ୍ୟ ବର୍ଷା ତୋର କାନ୍ତି କି ସୁନ୍ଦର
ବାହ୍ୟେ ରୁଦ୍ର ମୂର୍ତ୍ତି ଅନ୍ତେ ମନୋହର
ଏ ବର୍ଷ ଉତ୍କଳେ କର ସୁପାଳନ
ଗାଇବି ମୁଁ ତୋର ସୁଗୁଣ ଗାୟନ ।



ସାରଙ୍ଗ—ଚାତକ ପକ୍ଷୀ, ୨- କୀର—ଶୁକପକ୍ଷୀ, ୩- ଶମ୍ବର—ଜଳ ।

# ବସନ୍ତ

ନିଜ ଦଳବଳ ସଙ୍ଗରେ ଘେନି ଋତୁ ରାଜନ,
ଧରଣୀ ମଣ୍ଡଳେ କରନ୍ତି ଏବେ ଶୁଭାଗମନ ।
ଧୂମ୍ର ରୂପେ ଯାହା ଦିଶୁଛି ଚଉଦିଗ ଆକାଶେ
ସେମାନଙ୍କ ପଦ ଉତ୍‌ଥିତ ଧୂଳିରାଶି ସିନା ସେ ।
ରହି ଯାଉଅଛି ସେ ଧୂଳି ଯାହା ତରୁ ଉପରେ
ଫୁଟି ପଡୁଛି କି ସେ ସବୁ ନବ ପୁଷ୍ପ ରୂପରେ ?
ନିଦାରୁଣ ବର୍ଷା ଶୀତରେ କ୍ରୂର ଶାସନ ବଳେ
ପଡ଼ିଥିଲା ପିକ ବସନ୍ତ ରୋଗ ମହା କବଳେ ।
କଫରାଶି ରୋଧି ଥିବାରୁ ତାର କଣ୍ଠ ସତତ
ସ୍ୱର ଉଚ୍ଚାରଣେ ସହଜେ ହେଲା ଅସମରଥ ।
ପାଇଗଲା ଚୂତ ମୁକୁଳ ଏବେ ସୁରସାୟନ
ପାନ ମାତ୍ରେ ତାହା ପଳାଇ ଗଲା ଜବେ ଦମନ ।
ରୋଗ ମୁକ୍ତ ହୋଇ କୋକିଳ ଅତି ଆନନ୍ଦ ମନେ
ବସନ୍ତ ରାଜାଙ୍କୁ ସ୍ୱାଗତ କଲା ମଧୁର ସ୍ୱନେ ।
ଖଣ୍ଡ ଧର୍ମବୃକ୍ଷ ଶିଶିର ନିଜ ଦୁଷ୍ଟତା ପଣେ
ଲୁଟି ନେଇଗଲା ପଦ୍ମିନୀ ପଦ୍ମ ପୁଷ୍ପ ଭୂଷଣେ ।
ରକ୍ଷାକାଂକ୍ଷୀ ଋତୁରାଜାଙ୍କୁ କରି ଅବଲୋକନ
କୁସୁମେ ପଦ୍ମିନୀ ମଣ୍ଡିଲା ପୁଣି ନିଜ ବଦନ ।
ପୁଷ୍ପମୟ ହୋଇ ଶୋଭିଲେ ଜଳସ୍ଥଳ ସକଳ,
କୁସୁମ ସମୟ ବସନ୍ତ ନାମ ହେଲା ସଫଳ ।
ଦାରୁଣ ଶୀତର ପ୍ରତାପ ସହି ଅନବରତ
ଥିଲା ଜୀର୍ଣ୍ଣ ଶୀର୍ଣ୍ଣ ବିବସ ହୋଇ ଆମ୍ରବୃକ୍ଷ ।
ଦୈବଭାଗ୍ୟ ବଳେ ହେବାରୁ ବାୟୁ ପରିବର୍ତ୍ତିତ
ହୃଷ୍ଟ ପୁଷ୍ଟ ହୋଇ ଏବେ ସେ ପୁଣି ହେଲା ଶୋଭିତ ।

ଲାଗିଗଲା ବନେ ଉଦ୍ୟାନେ ଏବେ ମଧୁ ଉତ୍ସବ
ମଧୁଟରେ ଶୁଭିଲା ବିହଙ୍ଗ କଣ୍ଠ ସଙ୍ଗୀତ ରବ ।
ମଧୁ ଖାଇ ଖାଇ ମଧୁପ କଲା ବୀଣା ବାଦନ
କୁସୁମ ଟଳପେ ଧରଣୀ ବକ୍ଷ ହେଲା ଶୋଭନ ।
ବସନ୍ତ ମାଧୁରୀ ଦର୍ଶନେ ହୋଇ ଅତି ଉଲ୍ଲାସ
ବନ ଭୂମି କରି ଶୋଭିତ ମୃଗେ ରଚିଲେ ଲାସ୍ୟ ।
ଦ୍ୱିବାନଶି କଲେ କୁସୁମ ରୂପ ଫଗୁ ବର୍ଷଣ,
ମଞ୍ଜୁଳ ମଞ୍ଜୁଳ ଶାଳ୍ମଳୀ ଧାରୁ ପୁଷ୍ପିକା ପର୍ଣ୍ଣ ।
ନବ ପୁଷ୍ପବତୀ ଲତିକା ସାଜ ପୁଷ୍ପ ସ୍ତବକ
ମଣ୍ଡିଲା ଯତନେ ନବୀନ ତରୁବର ମସ୍ତକ ।
ଜାଣେ ନାହିଁ କେବେ ସୁଜ୍ଞାମୀ ଜ୍ଞାନ ଗରବ କରି
ପାଚି ସୁଦ୍ଧା ଏବେ ଶ୍ରୀଫଳ ଅଛି ପୂରୁବ ପରି ।
ମିଚ ହୋଇ କରି ପାରନ୍ତି ଲୋକେ ପରୋପକାର
ଘିନ ଦୁଃଖୀଙ୍କର ଆହାର ହେଲା ସୁପକ୍ୱ ବୁର ।
ଅକାତରେ ସବେ ଦିଅନ୍ତି ଧନ ଯେହ୍ନେ ବଦାନ୍ୟ
ଅବାତ କ୍ଷୋଭିତ ମଧୁକ କଲା ପୁଷ୍ପ ପ୍ରଦାନ ।
ଭକ୍ତ ପରେ ପ୍ରେମ ସଂଜାତ ହୁଏ ମନେ ଯେସନେ
କଥା ପରେ ଏବେ କେତକୀ ଫୁଟେ କଥା କାନନେ ।
ଅତି ଲୋଭମାୟୁ ଯାହାର ପ୍ରାଣ ଅପେକ୍ଷା ଧନ
ଧନ ନଷ୍ଟ ସଙ୍ଗେ ବିନଷ୍ଟ ହୁଏ ତାର ଜୀବନ ।
ଯତ୍ନେ ଫଳ ରକ୍ଷି ଗୋଧୂମ (୧) ତାର ମସ୍ତକ ଦେଶେ
ଫଳ ପାଇଁ ନାଶ ଯାଉଛି ସିନା ସେ ଅବଶେଷେ ।
ଗତାୟୁତ କାଲେ କଣ୍ଟକେ ଛୁଇ ଦିଏ ଯେ ବାସ
ଖର ରବିକରେ ଶିଳ୍ପୁଳା ଏବେ ହେଲା ବିନାଶ
ଉପଦ୍ରବ କରି ନପାରେ ଦୁଷ୍ଟ ସଦା ଜଗତେ
କେତେବେଳେ ହେଲେ ବିନାଶ ହୁଏ ତେଜସ୍ୱୀ ହସ୍ତେ ।

---

(୧) ଗୋଧୂମ—ଗହମ

ମଧୁମୟ ହେଲ୍ ଦିବସ ମଧୁମୟୀ ରଜନୀ
କି ଅଭାବ ପୁତ୍ର କନ୍ୟାର ପିତା ଯାହାର ଧନୀ ?
ସଂପରକ କିଛି ନ ରଖେ ଦେହ ସଙ୍ଗେ ଜୀବନ
କ୍ଷୀଣ ହେଲେ ମଧ୍ୟ ନଦୀରେ ଅଛି ସ୍ୱଚ୍ଛଜୀବନ ।
ଅପଥଗାମୀ କି ସୁପଥ ଦିଶେ ଯଥା କଣ୍ଟକ
ଦିନ ଦେଖି ଆଉ ବାହାରେ ନାହିଁ କେବେ ପେଚକ ।
ଦୁଷ୍ଟ ନିକଟରେ ଦୁଷ୍ଟତା କଲେ ହୁଏ ମଙ୍ଗଳ
ଖର ତପ୍ତ ହୋଇ ବାଲୁକା ଦେଲ୍ ବଙ୍ଗଳା ଫଳ ।
ପର ଶ୍ରୀ କାତର ମାନବ ପର ଶିରିକୁ ଗୃହିଁ
ସତତ ଚେଷ୍ଟିତ ଥାଆନ୍ତି ତାର ଅନିଷ୍ଟ ପାଇଁ ।

(ଅସଂପୂର୍ଣ୍ଣ)



# ବୀଜ ଓ ବୃକ୍ଷ

କ୍ଷୁଦ୍ର ବୀଜ ମଧ୍ୟେ ଅଛି ସୂକ୍ଷ୍ମ ବୃକ୍ଷଟିଏ
ଏ ତତ୍ତ୍ୱ ବୁଝିବ ଜ୍ଞାନ ବ୍ୟକ୍ତୀଙ୍କ ବିନା କିଏ ?
ହେବ ଯେବେ ତହିଁ ପଞ୍ଚଭୂତର ମିଳନ
ତହୁଁ ଅଳ୍ପ ସ୍ଥୂଳ ରୂପ ସେ କରେ ଧାରଣ ।
କ୍ରମଶଃ ବର୍ଦ୍ଧିତ ହୋଇ ହୋଇବ ବୃହତ
ଫୁଲ ଫଳ ଧରିବାରେ ହେବ ସମରଥ ।
ଏକ କାଳେ ଥିଲା ଯାହା କଣିକା ଆକାର
ପରେ ମହା ମହୀରୁହ ହେଲା କି ପ୍ରକାର ?
ମୁଷ୍ଟିମଧ୍ୟେ ଧରୁଥିଲୁଁ ଯାକୁ ଶତଶତ
ଗୋଟି ଗୋଟି ଏବେ ରୋଧୁଛନ୍ତି ଦୃଷ୍ଟିପଥ ।
ବୃକ୍ଷ ମଧ୍ୟେ ପଡ଼ିଥିଲା ଯାହା ସ୍ତୂପୀକୃତ
ତହିଁରୁ ଗୋଟିକୁ ଗୃହ୍ନି ହେଉଁ ସ୍ତମ୍ଭୀଭୂତ ।
କି ମହା ଶକତି ଅଛି ତା ମଧ୍ୟେ ନିହିତ
ଭାବିଲେ ସେ କଥା ହୁଏ ହୃଦୟ ବିସ୍ମିତ ।
ଧନ୍ୟ ସେହି ସୃଷ୍ଟିକର୍ତ୍ତା ମହିମା ଅପାର
ଦେଖାନ୍ତି ଜଗତେ କେତେ ବିଚିତ୍ର ବ୍ୟାପାର ।
ସ୍ମରି ତାଙ୍କ ଗୁଣାବଳୀ ହେଉଁ ବିମୋହିତ
ବିସ୍ମୟେ ମାନବ ପ୍ରାଣ ଅତି ଅକଳ୍ପିତ ।
ତାଙ୍କ ଇଚ୍ଛା ବଳେ ସ୍ଥୂଳ ହୁଏ ସୂକ୍ଷ୍ମତମ,
ସୂକ୍ଷ୍ମରୁ ହୁଅଇ ପୁଣି ସ୍ଥୂଳର ଜନମ ।
ତାଙ୍କ ଶକ୍ତି ପଦ ତଳେ ହୋଇ ଅବନତ
ମାଗଇଁ କରୁଣା ଭିକ୍ଷା ମୁଁ ଅନବରତ



# ପାଦପ

ବଡ଼ ଉପକାରୀ ପାଦପ ଜଗତେ,
ଲୋକ ଉପକାର କରୁ ତୁ ସତତେ ।
ନିଜ ପ୍ରାଣ ଦେଇ ଜଗତ ଜୀବନ
ରଖିବାକୁ, କେବେ ନୋହୁ ତୁ କୃପଣ ।
ନିଜେ କ୍ଷତଯୁକ୍ତ ହୋଇ ପର କ୍ଷତ
ବିନାଶ କରଣେ ଅଟୁ ତୁ ସମର୍ଥ ।
କରୁ ଉପକାର ଥାଉ ଆନ ନର,
ହତ୍ୟାକାରୀ ସେହୁ ଅଟଇ ତୋହର,
ତୋହୋ ଠାରେ ନାହିଁ ଉଚ ନୀଚ ଜ୍ଞାନ,
ସମ ଦୃଷ୍ଟି କରୁ ଲୋକଙ୍କ କଲ୍ୟାଣ ।
ଫଳ ମୂଳ ଦେଇ ପୋଷୁ ପ୍ରାଣୀଗଣ,
ସୁସ୍ନିଗ୍ଧ ଛାୟାରେ ହରୁ ପାନ୍ଥ ମନ ।
ତୋ ପୁଷ୍ପ ସୁବାସ କରଇ ତର୍ପଣ,
ନାସା ରନ୍ଧ୍ରେ ପଶି ପ୍ରାଣ ସଙ୍ଗେ ମନ ।
ମୂଳ ଛକ ଆଦି ସଙ୍ଗତେ ଅଦେ (୧)
ସ୍ୱରୂପେ ଗଦର ହେଉ କ୍ଷୟପ୍ରଦ ।
ତୋହୋଠାରେ ସୁଖେ ଲଭନ୍ତି ଆଶ୍ରୟ
କୁଳାୟ ଆଳୟ ରଚି ପକ୍ଷୀଚୟ ।
ମଳ ମୂତ୍ର ଆଦି କରିଣ ଭକ୍ଷଣ
ସୁସ୍ୱାଦୁ ଫଳ ତୁ ଦେଉ ଅନୁକ୍ଷଣ
ମାନବର ଯାହା ମହା ହାନିକର
ସେ ସମୀର ଆପେ ନେଉ ନିରନ୍ତର ।

---

(୧) ଅଦେ—ଔଷଧ

ତୋ ପୂତ ବଲ୍‌କଳ କରଇ ମଣ୍ଡନ,
ଋଷି ମୁନିଙ୍କର ଦିବ୍ୟ ସଂହନନ । (୨)
ଜନ ବ୍ୟବହାର୍ଯ୍ୟ ବିବିଧ ବସନ
କରିବାକୁ, କରୁ ତୁଳା ଉତ୍ପାଦନ
ଚିର ଶାନ୍ତିମୟ ତୋର ରମ୍ୟମୂଳ
ଆଶ୍ରି, ଶାନ୍ତି ଲଭିଥାନ୍ତି ପ୍ରାଣିକୁଳ ।
ସତତ ସବୁଜ ତରୁ ଶୋଭେତ ଯେଣୁ,
ଶୋଭନ୍ତି ଆଶ୍ରମ ବନ ଶୈଳ ଶ୍ରେଣୀ ।
ତରଣୀ ହୋଇଣ କରୁ ତୁ ତାରଣ,
ଜଳରାଶି ପୃଷ୍ଠେ କରି ସନ୍ତରଣ ।
ବାଣିଜ୍ୟର ତୁହି ମୁଖ୍ୟତମ ଅଙ୍ଗ
ଆଜି ଲକ୍ଷ୍ମୀ ଆଶ୍ରିଛନ୍ତି ତୋ ଉତ୍ସଙ୍ଗ ।
ତୋହ୍ନା ଠାରୁ ଯେତେ ଦ୍ରବ୍ୟ ହୁଏ ଭବେ
ତୋର ବିନା ତାହା ଭବେ କି ସମ୍ଭବେ ?
କେତେ ମହୋଦ୍ଦେଶ୍ୟ ସାଧନ କରଣେ
ଆସିଲୁ ପାଦପ ଏ ଭବ ଭବନେ ।
ନିଶ୍ଚୟ ଜଗତ ତୋହ୍ନାଠାରେ ଋଣୀ
ହେ ଧରମବୀର ଦାନବୀର ଗୁଣି !
ପାଦପ ତୋହର ପୂତ ଗୁଣ ଗାନ
କରି ପାରିବ କି, ମୁଁ ମୂଢ଼ ଅଜ୍ଞାନ ।
ଚିର ରୋଗମୟ ଏ ଶୀର୍ଣ୍ଣ ବିଗ୍ରହ
ରୋଗ ମୁକ୍ତ, ଲଭି ତୋର ଅନୁଗ୍ରହ ।
ତୋର ପ୍ରସାଦରେ ନିରାଶ ଜୀବନ
ଆଶା ମୁଖ କରିଅଛି ନିରୀକ୍ଷଣ ।
ହୋଇଅଛି ଶୁଷ୍କ ତରୁ ପଲ୍ଲବିତ
ଶୁଷ୍କ ନଦୀ ହୋଇଅଛି ପ୍ରବାହିତ ।

---

(୨) ସଂହନନ—ଶରୀର

ଅମା ଅନ୍ଧକାର କରଅଛ ଦୂର
ସୁଷଦ୍ଧଣ ଆସି ତୋ କୃପା ଜ୍ୟୋତ୍ସ୍ନା ପୂର
ଜୀବନ ଥିବ ମୋ ଶରୀରେ ଯାବତ
ତାବତ ଗାଇବି ତୋ ଗୁଣ ଶାଶ୍ୱତ ।



# ମର୍ତ୍ତ୍ୟ-ଦେବତା

ଧାତୁ ଦ୍ରବ୍ୟ କାଷ୍ଠ ଅବା ପାଷାଣ ଗଠିତ
ହେ ଦେବତା, ହୁଅ ତୁମ୍ଭେ ନରେ ସୁପୂଜିତ ।
ଏ କଠିନ ଦେହ କିପାଁ କରନ୍ତି ଧାରଣ,
ସହଜେ ନ ହୁଏ ନଷ୍ଟ ଏହା କି କାରଣ ?
ଅବିନାଶୀ ଆତ୍ମା ସହ ହେବାକୁ ତୁଳିତ,
ଏ ବିଗ୍ରହ ହୋଇଛି କି ତୁମ୍ଭ ମନୋମତ ?
ଦଗ୍ଧୀଭୂତ ହେଲେ ଧାତୁ ହୁଏ ବିଗଳିତ,
ପୃଷ୍ଠପାକେ ହୁଏ ଭସ୍ମ ରୂପରେ ବିହିତ ।
ଅନଳ ସଂଯୋଗେ କାଷ୍ଠ ଜଳିଯାଏ ଖରେ,
ପାଷାଣକୁ ଚୂର୍ଣ୍ଣୀଭୂତ ଲୌହ ଶସ୍ତ୍ର କରେ ।
ଏଣୁ ମନେ ମନେ ମୋର ହେଉଛି ସନ୍ଦେହ
ଦେବତା ଧରନ୍ତି କିପାଁ ଏତାଦୃଶ ଦେହ ?
ନରଠାରୁ ଦେବତାର ଉଚ୍ଚରେ ଆସନ
ଏ କଥାରେ କରୁଛି ମୁ ବିଶ୍ୱାସ ସ୍ଥାପନ ।
କିନ୍ତୁ ନର ଦେବତାଙ୍କୁ କରୁଛି ନିର୍ମାଣ,
କାଷ୍ଠାଦି କଠିନ ଦ୍ରବ୍ୟ ଜାତେ କିପାଁ ଜାଣ ?
ଅଟନ୍ତି ଦେବତାମାନେ ପର ଉପକାରୀ
ମନେ ସୁଦ୍ଧା ନ ଚାହିଁନ୍ତି ଅନିଷ୍ଟ କାହାରି ।
କେହି ଯେବେ ଲୋକ ପ୍ରତି କରେ ଅତ୍ୟାଚାର
ନା ନା ଭାବେ କରିଥାନ୍ତି ତାର ପ୍ରତିକାର ।
ତହିଁପାଇଁ ହୁଏ ଯେତେ କଷ୍ଟ ଉତପନ୍ନ
ଆନନ୍ଦରେ କରିଥାନ୍ତି ସେ ସବୁ ବରଣ ।
ପର ହିତ ପାଇଁ ସଦା ସହି ନାନା କ୍ଲେଶ,
ହୋଇଅଛି ସୁକଠିନ ତାଙ୍କ ହୃଦଦେଶ ।

ସେ କଠିନ ହୃଦୟକୁ କରି ରୂପ ଦାନ
କରୁଅଛୁଁ ମନୋମତ ମୂରତି ନିର୍ମାଣ ।
ପୂଜୁଅଛୁଁ ପୁଣି ତାଙ୍କୁ ଭକ୍ତି ସହକାରେ
ଉପକାରୀ ସଦା ପୂଜ୍ୟ ନୁହେଁ କି ସଂସାରେ ?
କରୁଅଛୁଁ ତାଙ୍କୁ ନା ନା ବେଶେ ସୁସଜ୍ଜିତ
ନାନା ଆଭରଣେ ପୁଣି କରୁଛୁଁ ମଣ୍ଡିତ
କେହି ଯେବେ ହରି ନେଇଯାଏ ସେହି ମାନ,
ନ କରନ୍ତି ଦେବତାଏ ତା ଦଣ୍ଡ ବିଧାନ ।
ଅଭାବରେ ପଡ଼ି ଲୋକ ହେଲେ କଲବଲ
ଏପରି କରମ ସିନା କରନ୍ତି କେବଳ ।
ନିରୀହ ପଶୁଙ୍କୁ ହାଣି ଦେଇ ରକ୍ତଧାର
ଦେବ କୃପା ମନାସଇ ଯେଉଁ କୁଳାଙ୍ଗାର
ଦେଖି ଦେଖି କରଇ ଏ ହିଂସ୍ର ଆଚରଣ
ଦେବତା ହୃଦୟ ଭୋଗୁଥିବ କି କଷଣ !
ସ୍ୱଭାବେ ଦେବତା ଅଟେ ମାତାଙ୍କ ସମାନ
କେଉଁ ମାତା ତୁଷ୍ଟ ହେବ ଖାଇ ତା' ସନ୍ତାନ ?
ନରର ଏ ଅତ୍ୟାଚାରେ ହୋଇ ମର୍ମାହତ
ଦେବତାଏ ଭଜଛନ୍ତି ତେଣୁ ବା ଜଡ଼ତ୍ୱ ।
ମଳମୂତ୍ର ତ୍ୟାଗ କରି ଦେବତାଙ୍କ ଶିରେ
କାକ ଶ୍ୱାନ ବଞ୍ଚିଛନ୍ତି ଦେଖ ଏ ମହୀରେ
ଏସବୁ ହୀନତା ସିନା କାକ କୁକୁରର
ଦେବତାଏ ହେବେ କପାଁ ତା ପାଇଁ କାତର ?
ଏଣୁ ଭାବେଁ ଅଛି ଯା'ର ସହିବା କ୍ଷମତା
ସେ ସିନା ଅଟଇ ମର୍ତ୍ତ୍ୟେ ପ୍ରକୃତ ଦେବତା !



# କବିତା

ଭାବ ଅଟଇ ମୋହୋର ପ୍ରାଣ ନିରନ୍ତର
ଭାବ ବିନା ମୁହିଁ ସିନା ମୃତ କଳେବର ।
ସୁଶୃଙ୍ଖଳ ଗଢ ମୋର ସୁରମ୍ୟ ପଞ୍ଜର
ତା'ନ ହେଲେ ଖଞ୍ଜ ପରି ଦିଶେଁ ଅସୁନ୍ଦର ।
ମାର୍ଜିତ ଭାଷାହିଁ ମୋର ବିଚିତ୍ର ବସନ
ତାକୁ ଘେନି କରୁଥାଏଁ ଲଜ୍ଜା ନିବାରଣ ।
ରସହିଁ ରକତ ରୂପେ ଶରୀର ମଧ୍ୟରେ
ରସି ମୋତେ ସବୁବେଳେ ଶାନ୍ତି ଦାନ କରେ ।
ମଧୁର ଶବଦ ମୋର ମୁଖ ମଧୁରିମା,
ଯେତେ ଥାଏ ତେତେ ବଢେ ମୋ ସୌନ୍ଦର୍ଯ୍ୟ ସୀମା ।
ଉପମା ମୋ ଶିର ଶୋଭୀ ରତ୍ନ ଅଳଙ୍କାର
ବହୁଗୁଣେ କରଇ ମୋ ସୁଷମା ବିସ୍ତାର ।
ମୋ ହୃଦୟ ହାର ଅଟେ ସୁମିଷ୍ଟ ବଚନ,
କରଇ ସତତ ସେ ମୋ ଗୌରବ ବର୍ଦ୍ଧନ ।
ପ୍ରସଙ୍ଗ ଅଟନ୍ତି ମୋର ଜନ୍ମଦାତା ପିତା,
ତାଙ୍କ କୋଳେ ଥାଇ ମୁହିଁ ହୁଏଁ ସୁଶୋଭିତା ।
ସୁକବି ଅଟନ୍ତି ମୋର ପ୍ରାଣ ପ୍ରିୟ ପତି
ତାଙ୍କ ପଦେ ରଖିଥାଏଁ ଅଚଳା ଭକତି ।
ଅକବି ଅଟନ୍ତି ମୋର ବୈମାତ୍ରେୟ ଭାଇ
ସତତ ଯତ୍ନ କରନ୍ତି ମୋ ଅନିଷ୍ଟ ପାଇଁ ।
ଅକବିଙ୍କ ଶିର ଠାରୁ ସୁକବିଙ୍କ ପଦ
ଶତଗୁଣେ ଅଟଇ ମୋ ସୁଖଶାନ୍ତିପ୍ରଦ ।



# ମଧୁରତା

ଅୟି ମଧୁରତା, ଜଗତ ବ୍ୟାପିନୀ,
ଜଗତ ମାନସ ରଞ୍ଜନ କାରିଣୀ ।
ତୋ ମଧୁର ଭାବେ ହୁଏ ମଧୁମୟ,
ଅହରହ ଏହି ସଂସାର ନିଳୟ ।
ବୀଣାର ଝଙ୍କାର କୋଦଣ୍ଡ ଝଙ୍କାର,
ମୁରଜ ଗମ୍ଭୀର ନିନାଦ ଆସାର,
ନିର୍ଝର ଝର୍ଝର ନାଦ ସରସର,
ସ୍ରୋତସ୍ୱିନୀ ସ୍ରୋତ କଳକଳ ସ୍ୱର,
ମଧୁର ଗୁଞ୍ଜନ କିଙ୍କିଣୀ ନିକ୍ୱଣ,
କଳକଣ୍ଠ କଣ୍ଠ କରୁଣ ଭାଷଣ,
ବରଷା-ଉଗର-ଡାହୁକ ନିସ୍ୱନ,
ଯହିଁ ମୁଖରିତ ହୁଅଇ କାନନ,
ଏ ସରବ ତୋତେ ଘେନ ନିରନ୍ତର
ସତତ ମଧୁର କରନ୍ତି ଅନ୍ତର ।
ସଉରଭ ସଙ୍ଗ ଯେସନ ଚନ୍ଦନ,
କରି ନ ପାରଇ ଲେବେ ବିସର୍ଜନ
ସେ ରୂପେ ଏ ସବୁ ତୋତେ ପ୍ରେମବଶେ
ଗାଢ଼ ଆଲିଙ୍ଗନ କରନ୍ତି ହରଷେ ।
ରାଜୀବ ରାଜିତ ସ୍ୱଚ୍ଛ ସରୋବର,
ନବ ଦୂର୍ବାବୃତ ବସୁମତୀ ଉର,
ନୀଳିମାରେ ନେତ୍ରେ ପବସ କାରକ
ଶାନ୍ତିମୟ ସଦା ଶାନ୍ତି ପ୍ରଦାୟକ ।
ଶାବକ ବିଚରନ୍ତି ଯହିଁ ମୃଗଗଣେ,
ମନୋମୁଗ୍ଧକର ସୁରମ୍ୟ ଉଦ୍ୟାନ,

ବିହଙ୍ଗମ କେଳି-ମନ୍ଦିର-ନିକୁଞ୍ଜ,
ଅଭ୍ର ବିଭ୍ରାଜିତ ସଙ୍କିତ ପୁଞ୍ଜ,
ନକ୍ଷତ୍ର ଖଚିତ ଅନନ୍ତ ଅମ୍ବର
ଫେନ ବିଶୋଭିତ ଅନନ୍ତ ସାଗର,
ଏହାଙ୍କ ମଧ୍ୟରେ ମଧୁରିମା ଭରି,
ନ ଥାଉ କି ବସି, କହତ ସୁନ୍ଦରି ?
ମାୟା ମୋହ ହୀନ ଶିଶୁ ଆସ୍ୟ ହାସ୍ୟେ
କାଦମ୍ବିନୀ କ୍ରୋଡ଼ ସୌଦାମିନୀ ଲାସ୍ୟେ
ଗଗନ ଲମ୍ବିତ ଇନ୍ଦ୍ରଧନୁ ସଙ୍ଗେ
କିଏ କ୍ରୀଡ଼ା କରୁଥାଏ ନା ନା ରଙ୍ଗେ ?
ବିଭୂତି ଭୂଷଣ ଦେବ ଯୋଗେଶ୍ୱର,
ଯୋଗରତ ପୂତ ମତି ଯାହାଙ୍କର,
ଯୋଗଭଙ୍ଗ ନିଜେ ମକରକେତନ,
ହେଲେ ଯା'ଙ୍କ କ୍ରୋଧ ଦହନେ ଦହନ,
ଗୌରି ଗୁରୁ ଶିରୁ ଗଙ୍ଗାଧର ଭଳି,
ଲମ୍ବିଛି ଯା ଶିରୁ ଶୁଭ୍ର ଜଟାବଳୀ,
ସୁଧାକର ସୁଧାକରେ ସମୁଜ୍ଜ୍ୱଳ,
ନିରନ୍ତର ଯା'ଙ୍କ ମସ୍ତକ ମଣ୍ଡଳ,
ସେ ନିଜେ ଆଦରେ ତୋତେ ଅନୁକ୍ଷଣ
କରୁ ନ ଥାନ୍ତି କି ସ୍ନେହ ଆଲିଙ୍ଗନ ?
କ୍ଷୁଦ୍ରଠାରେ କ୍ଷୁଦ୍ର ମହାନେ ମହାନ
ବେଶଧରି ଭୁହି ହେଉ ଶୋଭମାନ
କି ଜଳ କି ସ୍ଥଳ କି ବ୍ୟୋମ ମଣ୍ଡଳ
ସର୍ବେ ହୋଇଛନ୍ତି ତୋର ଲୀଳା ସ୍ଥଳ ।



# ପଲ୍ଲୀଶ୍ରୀ

ଅନ୍ନପୂର୍ଣ୍ଣା ଅବତୀର୍ଣ୍ଣା ପ୍ରସନ୍ନ ବଦନେ
ସ୍ନେହ ଭରେ ପ୍ରେମ ଭରେ 'ପଲ୍ଲୀଶ୍ରୀ' ସଦନେ ।
ଦୀନ ଦୁଃଖୀଙ୍କର ଦୁଃଖ ମୋଚନ ସକାଶ
ଅନ୍ନ ହସ୍ତେ ଅବିଶ୍ରାନ୍ତ ତା ପୂର୍ଣ୍ଣ ପ୍ରକାଶ ।
ଅନ୍ନ ଏକା ମାନବର ଜୀବନର ସାର
ଅନ୍ନ ବିବର୍ଜିତ ଧନେ ନ ଚଳେ ସଂସାର ।
ଭୂ ଭାରତେ ପଲ୍ଲୀ ଗ୍ରାମ ଚିର ରମଣୀୟ,
ଭାବୁକଜନଙ୍କ ପଲ୍ଲୀ ଶୋଭା ଅତି ପ୍ରିୟ ।
ତରୁଲତା ବିରାଜିତ କୁସୁମ ପଟଳେ
ସୁଷମାର ହାଟ ବସିଯାଏ ଜଳେ ସ୍ଥଳେ ।
ସୁରଭିତ ସ୍ନିଗ୍ଧ କୋଳେ ତରୁ ଅନ୍ତରାଳେ
ଶାନ୍ତ ମନ୍ଦ ଉଚ୍ଚାରନ୍ତି ପିକ ଡାଳେ ଡାଳେ ।
ପଲ୍ଲୀ ଯହିଁ ଅନ୍ନ ତହିଁ ଶାଶ୍ୱତ ଏ କଥା
କେହି କାହାଠାରୁ ଭିନ୍ନ ନୁହନ୍ତି ସର୍ବଥା ।
ପଲ୍ଲୀର ପ୍ରକୃତି ସଦା ଆହ୍ଲାଦ ଦାୟିନୀ
ବହୁଥାଏ ନିତ୍ୟ ତହିଁ ଶୋଭା-ମନ୍ଦାକିନୀ ।
ସୁଶୀତଳ ଛାୟା ତରୁତଳ ମନୋରମ
ନିଦାଘର ତାପ ନାଶି ଦୂର କରେ ଶ୍ରମ ।
ବିହଙ୍ଗମ ସ୍ୱନ ସଦା ମଧୁର ମୋହନ
ପୁଷ୍ପଫଳ ସମାକୀର୍ଣ୍ଣ ମହୀରୁହଗଣ ।
କୁସୁମ ଉପରେ ବସି ହୋଇ ହର୍ଷଭର
ମଧୁପାନ ମଧୁଗାନରତ ମଧୁକର ।
ସରଳ ନିରୀହ ଶାନ୍ତ କୃଷୀବଳ ଦଳ
ରହିଥାନ୍ତି ପଲ୍ଲୀ ସେବା ବ୍ରତେ ଅବିରଳ ।

ପଲ୍ଲୀ ବାସିଙ୍କଙ୍କ ପ୍ରିୟ ମଧୁମୟ ଗାନ
ଅସୀମ ଆନନ୍ଦ ରସେ ମୁଗ୍ଧ କରେ ପ୍ରାଣ ।
ପକ୍ୱ ଶସ୍ୟ କ୍ଷେତ୍ରରାଜି ବିରାଜେ ଅଙ୍ଗରେ
ରଞ୍ଜିତ ହୋଇଛି କିବା ସୁବର୍ଣ୍ଣ ରଙ୍ଗରେ ।
ମନ୍ଦିରେ ମନ୍ଦିରେ ଚଳେ ଦେବ ଆରାଧନା
ଶଙ୍ଖ ଘଣ୍ଟ ନାଦେ ନାଚି ଉଠେ ଦିଗଙ୍ଗନା ।
ଶିଶୁଗଣ କ୍ରୀଡ଼ାରତ ରହନ୍ତି ସତତ
ବ୍ରୀଡ଼ାବତୀ ବାଳା ରହେ ମୁଖ କରି ନତ ।
ସୁକୋମଳ ସ୍ପର୍ଶ ତାର ମନ ପ୍ରାଣ ହର
ପ୍ରସାଦ ମାଧୁର୍ଯ୍ୟ ଭରା ସଦା ତା ଅନ୍ତର ।
ବିଦ୍ୟା ବୁଦ୍ଧି ଜ୍ଞାନ ଧ୍ୟାନ ଅନ୍ୟର ଅଧୀନ,
ହୁଅନାହିଁ ତେଣୁ ପଲ୍ଲୀଗଣ ଉଦାସୀନ
'ପଲ୍ଲୀଶ୍ରୀ' ସତତ ହେଉ ଜୀବନ ଦ୍ୟୋତକ
ଲକ୍ଷ୍ୟ ଲଭ ସଙ୍ଘ କରୁ ଜନମ ସାର୍ଥକ ।



# ଶିଶୁ

ମୂର୍ତ୍ତିମନ୍ତ ସୁଷମା ତୁ ହେ ଶିଶୁ ରତନ
ତୋତେ ଦେଖି ଆନନ୍ଦର ଶତମୁଖୀ ସ୍ରୋତ
ମୋ ହୃଦ ଭୂମିରେ ବହୁଥାଏ ଘନଘନ
ନରୁହଇ ବିଷାଦ ପୂର୍ଣ୍ଣ ମୋ ଜୀବନ ପୋତ ।
ତୋହର ଉପମା ତୁହି ଅଟୁ ଏ ସଂସାରେ,
ତୋ ଜୀବନ ଅଟେ ଏକା ତୋତେ ଶୋଭମାସ୍ୟ,
ମୂରତି ଗଠିତ ତୋର ପ୍ରାଣ ଅନୁସାରେ
ମୂରତିର ଅନୁରୂପ ରୂପ ଲୋଭମାସ୍ୟ ।
ତୋର ରୂପ ଗୁଣ ଦେଖି ତୁ ଆନନ୍ଦେ ଖେଳ
ଆହୁରି ସେ ଆନନ୍ଦିତ ମଣ୍ଡୁଛୁ ମା କୋଳ ।

ଦେବଶିଶୁ ଦିବ୍ୟ ଭାବେ ପୂର୍ଣ୍ଣ ତୋ ଅନ୍ତର,
ନାହିଁ ତୋର ମନେ ତଳେ ଉଚ୍ଚ ନୀଚ ଜ୍ଞାନ,
ରାଜା ପ୍ରଜା ବରାବର କୁତ୍ସିତ ସୁନ୍ଦର,
ଭିକାରୀ ତୁଲ୍ୟ ହୀନ ଅବା ଧନବାନ,
ସମସ୍ତଙ୍କ କୋଳ ତୋର ସୁନ୍ଦର ଆସନ,
ସମସ୍ତଙ୍କ କ୍ଷୀର ତୋତେ ଅମୃତ ସମାନ,
ସମସ୍ତଙ୍କ ବକ୍ଷ ତୋର କୁସୁମ ଶୟନ
ସମସ୍ତେ ତୋ ନେହେ ରହି ପ୍ରାପ୍ତେ ଦୀପ୍ୟମାନ ।
ତାଙ୍କୁ ଦେଖି ତୁହି ଯେହ୍ନେ ହେଉ ଥାଉ ଧନ୍ୟ
ତୋତେ ଦେଖି ସେହି ରୂପେ ସେ କୃତାର୍ଥମନ୍ୟ ।

ହେଉ ତୋର ଜନ୍ମସ୍ଥଳ ପଲ୍ଲୀ କୁଟୀର
ଲୂତାଜାଲେ ସମାଚ୍ଛନ୍ନ ଥାଉ ତୋ ବିଗ୍ରହ

ଆଉ ତା'ର ସ୍ଥାନେ ସ୍ଥାନେ ସୁମଳନ ତର
ଦୋହାଇଥାଉ କୁଟୀରର ତଳ ବାଲମୟ ।
ମଳିନ ଯା ଦିଶିବ ତୋ ନେତ୍ରେ ସ୍ୱର୍ଣ୍ଣସମ
ଲୂତାଜାଲ ଦିଶୁଥିବ ଯେସନ୍ତେ ରୌପ୍ୟ-ତାର
ଦିଶୁଥିବ ଚୀର, ପଙ୍କ ପ୍ରାପ୍ତେ ମନୋରମ
ରତ୍ନ ରେଣୁ ମଣୁଥାଉ ବାଳ ଗଣି ତାର ।
ଦେବ ଶିଶୁବର, ତୋତେ ସେ କୁଟୀର ଧର
ଶୋଭୁଥାଏ ମନ୍ଦିରର ଗର୍ବ ଚୂର୍ଣ୍ଣ କରି ।

ସଂସାରେ ଅମୂଲ୍ୟ ଅଟେ ଗୁରୁଜନ ସ୍ନେହ
ନୁହନ୍ତି ତାର ସମକକ୍ଷ ହୀରାମାଳା ମୋତି
ଜଡ଼ ଦୀପ୍ତି ଧରି ଶୋଭୁଅଛୁ ଏହା ଦେହ
ତହିଁରୁ ତ ସ୍ରବୁଅଛି ପ୍ରାଣମୟ ଜ୍ୟୋତି
କି କରିବ ପରିଚ୍ଛଦ କୃତ୍ରିମାବରଣ,
ଗୁରୁଜନ ସ୍ନେହ ଦୃଷ୍ଟି ଯୋଗ୍ୟ ପରିଚ୍ଛଦ ।
ଯେ କରଇ ଦେହ ମାତ୍ର ଶୋଭା ସମ୍ପାଦନ,
ଏ ଯେ ଜୀବନର ଅଟେ ସୁଖଶାନ୍ତି ପ୍ରଦ ।
ଏ କଥାକୁ ବୁଝି ତୁହି ଉତ୍ତମ ରୂପରେ
ଆନନ୍ଦିତ ଥାଉ, ମଜ୍ଜି ସେ ସ୍ନେହ-କୂପରେ ।

ସୁଜ୍ଞାନର ଶିରୋମଣି ଅଟେ ଯେ ସାରଲ୍ୟ
ସନ୍ତୋଷ ଅଟଇ ଯାର ବକ୍ଷ ରତ୍ନହାର
ତୋ ହୃଦୟେ ସେ ସାରଲ୍ୟ ସତତ ଉଜ୍ଜ୍ୱଳ
ସେ ସନ୍ତୋଷେ ପୂରିଛି ତୋ ମାନସ ଆଗାର ।
ଜାଣୁନାହିଁ ଏ ସଂସାରେ କାହା ନାମ ଲୋଭ
କପଟତା କିଏ ତାର କାର୍ଯ୍ୟ ଅବା କିସ
ନ ପାଇ ବାଞ୍ଛିତ ଧନ ଭବେ ଯେଉଁ କ୍ଷୋଭ
ନ ଜଳାଏ ତାହା ତୋର ହୃଦ ଅହର୍ନିଶ,

ବୋଲୁଥାନ୍ତି ପଣ୍ଡିତେ ତୋତେ ଅଜ୍ଞାନ ସଂସାରେ
ମହା ଜ୍ଞାନବାନ ତୁହି ଅଛୁ ମୋ ବିଶ୍ବରେ ।

ଫୁଟେ ଯେତେବେଳେ ତୋର ମୁଖ ଶୋଭା-ସରେ
ବିମଳ ଆନନ୍ଦ ଜାତ ହାସ୍ୟ ଶତଦଳ
ସ୍ଫୀତ ହୋଇ ଗଣ୍ଡ ଯୁଗ ସେହି ଅବସରେ
ବିକଶେ ଯେହ୍ନେ ସେ ପଦ୍ମର ମନୋହର ଦଳ ।
ଯେତେବେଳେ ତୋତେ ଦେଖି ତୋର ଗୁରୁଜନ
ଆନନ୍ଦ ରସରେ ହେଉଥାନ୍ତି ଅଭିଷିକ୍ତ
ସତେ ଯେହ୍ନେ ପାଇଗଲେ କୋଟିଏ ରତନ
ଅବା ଇନ୍ଦ୍ର ପଦେ ହୋଇଗଲେ ଅଧିଷ୍ଠିତ ।
ଆନନ୍ଦରୁ ବଳି ସୁଖ ଭବେ ଅଛି କାହିଁ,
ସେହି ତ ଅଟଇ ସ୍ବର୍ଗ ଆନନ୍ଦ ଯା ପାଇଁ !



# ମାତୃହୀନର ବିଳାପ

ଭବେ କେ ଅଛି ଅବା ଏମନ୍ତ ଜନ,
ଜନନୀ ପଦକୁ ମୋ' ହେବ ଭାଜନ
ସସ୍ନେହେ ବସାଇବ କୋଳକୁ ନେଇ
ଭାଷିବ ଭାଷା, ମୁହେଁ ଚୁମ୍ବନ ଦେଇ । ୧ ।
କା' ପ୍ରାଣ ହେବ ମୋହୋ ପାଇଁ କାତର,
ନୟନୁ ହେବ ଯଦ ତଳେ ଅନ୍ତର,
ଟାକ ରହିବ ବସି ମୋ ପଥ ଚାହିଁ,
ମୋ ଠାକୁ ଅଗ୍ରେ ଅନ୍ନ ଛୁଇଁବ ନାହିଁ । ୨ ।
ମଙ୍ଗଳ ମନାସି ମୋ ଅନବରତ
କେ ଅବା ଆଚରିବ ବାର ବରତ,
ନିଜ ଦୁଃଖରେ ହୋଇ ଅଟଳମତ .
ମୋ ଦୁଃଖ ସ୍ମରି ହେବ ଦୁଃଖେ କରତ । ୩ ।
ଯେବେ ଯା' ମନାସିବ ଉତ୍ସୁକ ମନେ,
କେ ତାହା ଆଣିଦେବ ଅତି ଯତନେ,
ଯତ୍ନରେ ଭାବ ପୁଣି ସ୍ନେହ ସଞ୍ଚିତ—
ବଚନେ କରୁଥିବ ପ୍ରାଣ ପ୍ଳାବିତ । ୪ ।
ମା ବିନା ଲୁଛ ଯା'କୁ ସବୁ ବିଭବ
ଗହନ ବନ ପ୍ରାୟ ମଣେ ଏ ଭବ,
ଉଇଁଲେ ସୁଦ୍ଧା ଶତ ସୂର୍ଯ୍ୟ ଗଗନେ
ମଣିବ ତମୋମୟ ଏହି ଭୁବନେ । ୫ ।
ଯେତକ କରୁଥିବ ତା ପାଶେ ଦୋଷ
କେ ତାହା କ୍ଷମା ଦେବ ହୋଇ ସନ୍ତୋଷ,
କେବେ ନ କହି ପଦେ କଟୁ ବଚନ
କରିବ ଅଜ୍ଞାନତା ଦୋଷ ମାର୍ଜନ । ୬ ।

ଶିକ୍ଷାନ୍ତକରେ କହ ବହୁତ କଥା
ଅଳକ୍ଷେ ହରି ନେବ ମୋ ହୃଦ ବ୍ୟଥା
ସରଳ ଭାବ ଯା'ର ଅବଲୋକନେ
ଭକତ ସ୍ୱତଃ ଜାତ ହୁଅଇ ମନେ । ୭ ।
ଅଭାବ କି ପଦାର୍ଥ ଯାହା ମୋ ମନ
କରି ନ ପାରୁଥିଲା ଅବଧାରଣ,
ଚିନ୍ତାର ରୂପ ଗୁଣ ନଥିଲା ଜଣା
ଯା' କଥା ଶୁଣି ଲୋକେ ହୁଏଁ ମୁ ବଣା । ୮ ।
ପାରୁଛୁ ଜାଣି ଯେତେ ଅଜଣା ଥିଲା
କରୁଛୁ ହୃଦୟକୁ ଏବେ ମୁ ଶିଳା,
ବାଜୁ ବାଜିବ ଯେତେ ବିପଦ-ଶର
ତହିଁରେ କିଛି ଡର ନାହିଁ ହୃଦର । ୯ ।
କିନ୍ତୁ ମୋ ପ୍ରାଣ ତାହା ନପାରି ସହି
ଚିନ୍ତା ଅନଳେ ହୁଏ ମରିବେ ଦହି,
ସେ ଦାହ ତାପ ଆସି ଥରକୁ ଥର
ସନ୍ତପ୍ତ କରୁଅଛି ହୃଦ-ଦଅର । ୧୦ ।
ପ୍ରାଣ ହୃଦର ଏହି ସନ୍ତାପ ଘୋର
କଲାଣି କ୍ଷୁବ୍ଧ ମନ-ଆକାଶ ମୋର,
ଆଶା-ଜଳଦ କାହିଁ ଗଲାଣି ଗୁଳି
ନିଶା-ରବି ତାକୁ ଦେଉଛି ଜାଳି । ୧୧ ।
ହେ ପ୍ରଭୁ ଘନନାଥ ତୁମ୍ଭ ଶ୍ରୀପଦ—
ଯୁଗଳ ଏବେ ମୋର ଆଶ୍ରୟପ୍ରଦ,
ବିପଦ ଚିନ୍ତା କ୍ଷୋଭ ନିରାଶା ରାଶି,
କରୁଣା ହେଲେ ନଷ୍ଟ ହେବ ବିନାଶି । ୧୨ ।

□

# ପ୍ରକୃତି ଓ ବିଜ୍ଞାନ

ଅଗଣିତ ଲତା ଗୁଳ୍ମ ତରୁ ତୃଣ ଗଣ
ଧରଣୀ ଗର୍ଭରୁ ହୋଇଛନ୍ତି ଉତ୍ପନ୍ନ ।
ପତ୍ର-ପୁଷ୍ପ ଫଳମୂଳ ବିବିଧ ପ୍ରକାର
ଦେଇ ସାଧୁଛନ୍ତି କେତେ ଲୋକ ଉପକାର ।
ଧରିତ୍ରୀ ମାତାର ବକ୍ଷୁ କ୍ଷୀର କରି ପାନ
ହୃଷ୍ଟ ହେଉଛନ୍ତି ହୃଷ୍ଟ ପୁଷ୍ଟ କାନ୍ତିମାନ ।
ଧନ୍ୟ ସେ ଧରିତ୍ରୀ ମାତା, ଗଣି ଗଣି ପୟ
ଦେଇ ପୋଷୁଅଛି ତାର ସନ୍ତାନ ନିଚୟ ।
ଅକଳନ କ୍ଷୀରେ ପୂରିଅଛି ବକ୍ଷସ୍ଥଳ
ଏ କଥା ଜାଣନ୍ତି ତାର ଅପତ୍ୟ ସକଳ ।
ମଳମୂତ୍ର ପଙ୍କ ଆଦି ଅତି ଘୃଣ୍ୟତମ— ?
ଖାଦ୍ୟଖାଇ, ଫଳ କନ୍ଦ ଦିଅନ୍ତି ଉତ୍ତମ ।
ଅଖାଦ୍ୟ ସେ ଖାଇ କରେ ସୁଖାଦ୍ୟ ପ୍ରଦାନ
ତାହା ସମ ଜଗତେ କେ ଅଛି ଗୁଣବାନ ।
ଏ ପ୍ରକ୍ରିୟା ଜାଣିଥିଲେ ଭୂମି ମଧୁ ଜନ
କରୁଥାନ୍ତା ଭୂରି ଭୂରି ଖାଦ୍ୟ ଆହରଣ ।
ବୃଷ୍ଟି ପାଇଁ କପାଁ ଥାନ୍ତା ଆକାଶକୁ ଚାହିଁ,
ଅବା ଭୂମି ଚଷି ଚଷି ମରନ୍ତା କପାଇଁ ?
ବୁଣନ୍ତା କପାଇଁ ଶସ୍ୟ ଭରଣ ଭରଣ
ରାତି ଦିନ ଶ୍ରମ କରୁଥାନ୍ତା ଅକାରଣ
ବହୁ ବିଧ ରସ ଯୁକ୍ତ ସୁଖାଦ୍ୟ ନିକର
ଯନ୍ତ୍ର ଉତ୍ପାଦନ କରି ଦିଅନ୍ତା ସତ୍ୱର
ଅତି ବୃଷ୍ଟି ଅନାବୃଷ୍ଟି ଦୁର୍ଭିକ୍ଷର ଦାଉ
ମାନବ ଉପରେ ପଡ଼ି ନ ପାରନ୍ତା ଆଉ ।

କିନ୍ତୁ ପ୍ରକୃତିର ଯନ୍ତ୍ର ଯା' ହୁଏ ବାହାର
ମାନବ ତା' କରି ପାରେ ନାହିଁ ଆବିଷ୍କାର ।
ବିଜ୍ଞାନ ହେଲେହେଁ ନିତ ନବ ଉଦ୍ଭାବନ
ପ୍ରକୃତିକୁ ଜିଣିବାକୁ ନୁହେଁ ସେ ଭାଜନ ।
ପ୍ରକୃତି ବର୍ଷଣ କରେ ଗଗନରୁ ନୀର
ଗାଭୀ ଯନ୍ତ୍ର ଜାତ କରେ ତୃଣ ମଧ୍ୟୁ କ୍ଷୀର ।
ଜୀବନ୍ତିଏ କରଇ ତା ଶକ୍ତି ପରକାଶ
ଉତ୍ପାଦନ କରି ଭୂମି ରସରୁ କାର୍ପାସ ।
ମୃତ୍ତିକାରୁ ଆମ୍ବ ପାଏ ମିଷ୍ଟ ରସଚୟ
ଲିମ୍ବ ତହିଁ ତିକ୍ତରସ କରଇ ସଞ୍ଚୟ ।
ପ୍ରକୃତି ରହସ୍ୟ ଅତି ବିଚିତ୍ର ବ୍ୟାପାର
ଜନ୍ମାଏ ଅସାରୁ ସାର, ସାରରୁ ଅସାର ।
ଜଡ଼ରୁ ଚେତନା ଜାତ କରେ ଶତ ଶତ
ଚେତନକୁ ଜଡ଼େ ପୁଣି କରେ ପରିଣତ ।
ଅଖାଦ୍ୟରୁ ଉପୁଜାଏ ଖାଦ୍ୟଦ୍ରବ୍ୟମାନ
ଖାଦ୍ୟକୁ ଅଖାଦ୍ୟ କରେ ଧନ୍ୟ ତା ବିଧାନ ।
ଅନନ୍ତ ଏ ତଥ୍ୟ ତା'ର, କେ ପାରିବ ପାଇ
ବିଜ୍ଞାନ ତ' ତାହା ତତ୍ତ୍ୱ ପଦାର୍ଥର ଗ୍ରାଇ ।
ସଭ୍ୟ ଦେଶେ ବଢ଼ିଅଛି ବିଜ୍ଞାନ ପ୍ରଭାବ
ଏ ତତ୍ତ୍ୱ ବୁଝିବା ପାଇଁ ଲୋକର ଅଭାବ ।
ଉଡ଼ିଲେ ଗଗନେ ଅବା ବୁଡ଼ିଲେ ସଲିଳେ
ମାନବର କ୍ଷୁଧା ନାଶ ହେବ ନାହିଁ ତିଳେ ।
ଖାଦ୍ୟର ସମସ୍ୟା ସବୁଠାରୁ ଗରୀୟାନ,
ଉଚିତ ଅଟଇ ଆଗେ ତାର ସମାଧାନ ।
କେହି ଯେବେ ଲୁଟି ନେଲ ଜଣକର ଖାଦ୍ୟ
ଭୋକେ ମରିବାକୁ ହୁଏ ସେ ଜଣକ ବାଧ୍ୟ ।
ମାନବତା କରିବ କି ଏହା ସମର୍ଥନ
ଏହା ସିନା ଅଟେ ତା'ର ପଶୁତ୍ୱ ଲକ୍ଷଣ ।

ନ ହେବ ଯେପରି କେହି କ୍ଷୁଧାରେ ବିକଳ,
ବିଜ୍ଞାନ ସେ ଦିଗେ ଦେଲେ ଧ୍ୟାନ ଅବିରଳ,
ଅବନୀରେ ନ ରହନ୍ତା ବୃଥା ଯୁଦ୍ଧ ଭୟ
କେ କପାଁ କରନ୍ତେ ଆଉ ପର ରାଜ୍ୟ ଜୟ ?
ସ୍ତୂପୀକୃତ ସ୍ୱର୍ଣ୍ଣ ରାଶି ସଞ୍ଚିଥିଲେ ଘରେ
ବଞ୍ଚି ତ ପାରିବେ ନାହିଁ ଖାଦ୍ୟ ବିନା ନରେ ।
ଗ୍ରାସ, ଆଚ୍ଛାଦନ, ଜ୍ଞାନ, ଏ ତିନି ସମାନ
ମାନବତା ଏ ତିନିଙ୍କି ଧରି ବିଦ୍ୟମାନ
ପର ଉପକାର ଇଚ୍ଛା ହେଲେ ଉପଗତ
ମାନବତ୍ୱ ଦେବତ୍ୱକୁ ହୁଏଇ ଉନ୍ନିତ ।



# ବୃକ୍ଷ ଓ ବୀଜ

ଯହୁଁ ଜାତ ହୁଏ ବୀଜ, ବୀଜୁ ପୁଣି ଗଛ,
କହି ନପାରନ୍ତି କେହି କେ ଆଗ କେ ପଛ ।
ପୁଣି ଦେଖ, ଗଛ ଯେଉଁ ବୀଜ ଜାତ କରେ,
ଅତି ସୂକ୍ଷ୍ମ ରୂପେ ସେହି ଥାଏ ତା ଭିତରେ ।
ବଡ଼ ହେଉ ସାନ ହେଉ ସେ ଗଛ ଯେପରି,
ମଞ୍ଜିମଧ୍ୟେ ରୂପ ତାର ଦେଇଥାଏ ଭରି ।
ବୀଜ ହୋଇ ଅଙ୍କୁରିତ ଧୀରେଧୀରେ ବଢ଼ି
ତଦରୂପ ପତ୍ର ପୁଷ୍ପ ଫଳ ହୁଏ ଗଢ଼ି ।
କେତେ ବୀଜ ଦିଶୁଥାନ୍ତି ଆଖିକୁ ସମାନ
ଗଛ ହେଲେ ଚିହ୍ନା ପଡ଼ିଯାନ୍ତି ସେହି ମାନ ।
ଆଉ ପୁଣି ଦେଖାଯାଏ କେତେକ ଗଛରେ
ଏକ ଡାଳ ଦୁଇ ତିନି ରଙ୍ଗ ଫୁଲ ଧରେ ।
ଯା' ସ୍ୱଭାବ ଯେଉଁପରି ସେ ରସ ସେ ଲଭେ,
ସବୁରସ ପୂରିଅଛି ଅବନୀ ଗରଭେ ।
ଗଛର ଦେହରୁ ଯେଉଁ ପତ୍ର ପଡ଼େ ଝରି,
ପାଉଁଳ ଉଠଇ ପୁଣି ପତର ସେପରି ।
ଗତ ସଙ୍ଗେ ଆଗତକୁ ଥରେ ତୁଳି ଦେଖ
ଆକାର ପ୍ରକାର ରଙ୍ଗ ଦାଗ ସବୁ ଏକ ।
ଏକଇ ଭୂଇଁରେ ଦେଖ ଜନ୍ମି ତରୁଗଣ
ତା ମଧ୍ୟରୁ ନାନା ରସ କରନ୍ତି ଗ୍ରହଣ ।
ଆହୁରି ବିଚିତ୍ର ପୁଣି ଅବନୀ ସତତ,
ମଇଳା ସବୁକୁ କରେ ରସେ ପରିଣତ ।
ଯେଉଁ ସବୁ ଆବର୍ଜନା ଫିଙ୍ଗି ଦେଉଁ ଦୂରେ
ତହୁଁ ରସ ଜାତ କରେ ପୃଥିବୀ ପ୍ରଚୁରେ ।

ଫଳମୂଳ ଶାଗ ଯାହା କରୁଛୁଁ ଆହାର
ସେହି ରସେ ଭରି ଅଛି ଶରୀର ତାହାର ।



# ମାନବ ଓ ମୃତ୍ୟୁ

ଆସ ଆସ ମରଣ ହେ, ଆସି ଯାଅ ଥରେ,
ଦେଖେଁ ତୁମ୍ଭ ଦିବ୍ୟ ରୂପ ନୟନ ପଥରେ ।
କହି ଦିଅ ଦେବ ଥରେ ଦୁଇ ଗୁଟି କଥା
ଶୁଣି ମୋର କର୍ଣ୍ଣ ଲଭୁ କରୁ ସାର୍ଥକତା ।
ଛୁଇଁ ଦିଅ ଶରୀରକୁ ତୁମ୍ଭ ମୃଦୁ କରେ
ସ୍ପର୍ଶ ଅନୁଭବ ଦେହ ପୂରୁ ପୁଲକରେ ।
ଆଘ୍ରାଣ କରାଅ ସୁରଭିତ ଦେହ ବାରେ,
ନାସା ମୋର ଭରିଯାଉ ସୁଖ ପାରାବାରେ ।
ଧୀରେ ମୃତ୍ୟୁ ଦେବତା କହନ୍ତି ଉତ୍ତରେ
'ଶୁଣ ତେବେ ବାଣୀ ମୋର ସୃଷ୍ଟିର ଚତୁରେ,
ଚିରଦିନ ପାଇଁ ଯେବେ ମୁଦିବ ନୟନ
ସେଦିନ ପାରିବ କରି ମୋ ରୂପ ଦର୍ଶନ ।
ଯେବେ କିଛି ନ ଶୁଭିବ ତୁମର ଶ୍ରବଣେ
ସେଦିନ ହେବ ସକ୍ଷମ ମୋ କଥା ଶ୍ରବଣେ ।
ଛୁଇଁଲେ ଜାଣିବା ଯେବେ ହେବ ଅସମ୍ଭବ
ସେ କାଳେ କରିବ ମୋର ସ୍ପର୍ଶ ଅନୁଭବ ।
ଶୁଙ୍ଘିବା ଶକତି ଲୋପ ହେଲେ ତବ ଘ୍ରାଣୁଁ
ତେବେହେଁ ଲଭିବ ସୁଖ ମୋହର ଆଘ୍ରାଣୁଁ ।



# ବର୍ଷୋତ୍ସବ

(୧)

ଘିଡ଼ ଘିଡ଼ ଘିଡ଼ ଘିଡ଼ ଜଳଦ ଗର୍ଜନ,
ସର ସର ସର ବହେ ପ୍ରଖର ପବନ,
ଝପ ଝପ ଝପ ଜଳ ସଂଘାତ ପତନ,
କରେ ଧରା ପୃଷ୍ଠେ ମହା ଉତ୍ସବ ସୃଜନ ।

(୨)

ଗାଇଲେ ମୟୂରୀକୁଳ ପ୍ରେମ ସୁସଙ୍ଗୀତ
ନୃତ୍ୟ କଲେ ନିଜ ଗାନେ ହୋଇ ବିମୋହିତ
ବାଦ୍ୟ ବଜାଇଲେ ତହିଁ ଡାହୁକ ଦମ୍ପତି
ଏ ରୂପେ ଉତ୍ସବମୟୀ ହେଲା ବସୁମତୀ
ପରିଧାନ କରି ନୀପ ମହାର୍ଘ ବସନ
ଆସି ଉପସ୍ଥିତ ହେଲା ଉତ୍ସବେ ବନ୍ଧନ ।
ଉତ୍ସବର ନାମେ ହୋଇ ଅର୍ଣ୍ଣବ ଉଚାଟ
ଆସିଲେ ସାଧବ ବଧୂ ପିନ୍ଧ ରଙ୍ଗପାଟ ।

(୩)

କୃଷ୍ଣଚୂଡ଼ା କନିଅର ଯୂଥିକା ନଙ୍ଗନା,
ବାଇଲେ ମଧୁର ସ୍ୱରେ ଅଳି କଣ୍ଠେ ବୀଣା ।
ଚଟିମା ଏ ଶଯ୍ୟା ତେଜି ଉଠିଲେ ସତ୍ୱର,
ଉନ୍ମାଦନା ପ୍ରାପ୍ତେ ନୃତ୍ୟ କଲେ ଭୟଙ୍କର ।
ବରଷା ତୁ ଶିଖିଛୁ କି ମୋହନ ମନ୍ତ୍ର,
ମୁଗ୍ଧ କରି ଦେଲୁ କ୍ଷଣକରେ ଚରାଚର ।



# ବୁଢ଼ାରଜା

ରମ୍ୟ ବୁଢ଼ାରଜା ଶୋଭାର ଆଳୟ
ବୁଧଜନ-ହୃଦ ପ୍ରାୟେ ମଧୁମୟ ।
ଭାବୁକ ଜନର ମନୋମୁଗ୍ଧ କର,
ଅଭାବୁକ ତୋତେ ମଣଇ ଇତର ।
ଜାତେ କଳେବର ପ୍ରସ୍ତରମୟ ପର
ଅଭାବୁକ ପକ୍ଷେ ତୁ କ୍ଷୁଦ୍ର ଡୁଙ୍ଗର ।
ନାହିଁ ସିନା ତୋର ସୁବିଶାଳ କାୟ
ଶୋଭାରେ ତୋ କାୟ ବିଶେଷ ଉଚ୍ଚ ପ୍ରାୟ ।
କାୟ ନୁହେଁ କେବେ ଗୁଣର ମାପକ,
ପାଷାଣ୍ଡ ତା' ଲାଗି ମହାର୍ଘ ହୀରକ ।
ଚଉଦିଗ ଶସ୍ୟ ହରିତାୟମାନ
ତହିଁ ମଧ୍ୟ ଭୂମେ ତୋର ଅଧିଷ୍ଠାନ ।
ରଜତମୟ ରମ୍ୟ ଆସ୍ତରଣ
ଉପରେ କି ଅବା ତୋର ସିଂହାସନ ।
ଅବା କୃଷ୍ଣ ମୃଗ ଚର୍ମୋପରେ ବସି
ଧ୍ୟାନ ମଗ୍ନ ହୋଇ ଅଛୁ ତୁ ରାଜର୍ଷି !
ପୋଷି ଅଛୁ ଲକ୍ଷ ଲକ୍ଷ ତରୁ-ପ୍ରଜା,
ସାର୍ଥକ ତୋହର ନାମ ବୁଢ଼ାରଜା ।
ପ୍ରଷ୍ଫୁଟିତ କାଶ ଧବଳ ଚାମର,
ଢାଳୁଅଛି ସେହ୍ନେ ଲକ୍ଷି ତୋ ଶିଖର ।
ତୋର କଳେବର କରନ୍ତି ଶୋଭନ
ଧର ଗୁରୁକାନ୍ତ ତରୁଲତା ଗଣ ।
ତହିଁ ମଧ୍ୟେ ଉଠି ଆରୋହଣ ମାଳା-
ଉଠି ସ୍ପର୍ଶେ ତୋର ଚୂଡ଼ ଚନ୍ଦ୍ରଶାଳା,

ଲଗାଇ ପାଦପେ ଶିର ପରସ୍ପର
କରନ୍ତି ପାବଛ୍ଛ ପଥକୁ ସୁନ୍ଦର ।
ତୋ ସିଂହଦ୍ୱାରର ତୋରଣ ସଦୃଶ
ଦୂରରୁ ପ୍ରଶ୍ଚତ ହୁଅଇ ସେ ଦୃଶ୍ୟ ।
ସେ ସୋପାନ ପଥେ ହୋଇ ଅଗ୍ରସର
ଦେଖିଲ ଥରେ ତୋ ଦୃଶ୍ୟ ମନୋହର ।
କରଳ୍ପ ପାଦପ ପ୍ରତିହାରୀ ସମ
ପଥ ପାର୍ଶ୍ୱେ ରହି ଦଶନ୍ତି ସୁଷମ ।
ଛାୟାଦାନେ ଛଳେ ନ ହୋଇ କାତର
ବୃକ୍ଷେ ରହିଛନ୍ତି, ହୋଇ ବନଚର ।
ନବଜ ନିକୁଞ୍ଜେ ଦିବାକର କର
ପଶିବାକୁ ପାଏ ନାହିଁ ଅବସର ।
ବୃକ୍ଷୁ ବୃକ୍ଷେ ପୁଷ୍ପବନ୍ତ ଲତାଗଣ
ତେଣିଂ ରଚିଛନ୍ତି କୁସୁମ ଦୋଳନ ।
ଥରେ ଥରେ ତହିଁ ଦୋଳୁଥାନ୍ତି ରଙ୍ଗେ
ଗାଇ ସୁମଧୁର ସଙ୍ଗୀତ ବିହଙ୍ଗେ ।
ଦେବ ବାଳାଏ କି ପକ୍ଷୀ ବେଶ ଧରି
ଦୋଳନ୍ତି ତୋହୋର ଦୋଳନେ ଶିଖରି !
ନାଗ୍ରି ନାସା ଶୋଭା କଳ୍ପନାକୁ ସାଜ
ସ୍ଥାନେ ସ୍ଥାନେ ଶୋଭେ ଭଲ ପୁଷ୍ପ ରାଜ ।
ସୋପାନ ପଂକ୍ତିରେ ଆରୋହି ସତ୍ୱର
ସମ୍ମୁଖେ ଦେଖିଲ ତୋ ଗୃହୁ ଶିଖର ।
ରଜତ ଧବଳ ଦେଉଳ ମୁକୁଟ
କରେ ବିମଣ୍ଡିତ ତୋର ରମ୍ୟ କୂଟ ।
ପୂତ କଟେ ତୋର ସମୁଚ୍ଚ ଶିଖର
ବିରାଜନ୍ତି ତହିଁ ଶ୍ରୀ ଚନ୍ଦ୍ରଶେଖର ।
ଜାଣିବାରୁ ଏହା ଅତି ରମ୍ୟ ସ୍ଥାନ
ଆସି କରିଛନ୍ତି ଏଥି ଅବସ୍ଥାନ ।

ହର ଶିରେ ନିତ୍ୟ ଢାଳନ୍ତି ଗୁମର,
ଶିଶୁ ଶିଶୁ ମନ୍ଦ ଝାରତରୁବର,
ତହୁଁ ନମି ଶିବ ପବନ ଚରଣ
କଲ ତୋର ଶୋଭାଶ୍ରମେ ବିଚରଣ ।
ଘନ ପଲ୍ଲବିତ ମହୀରୁହମାନ
କରୁଛନ୍ତି ଶୀତ ସ୍ନିଗ୍ଧ ଛାୟାଦାନ ।
ପାଦପେ ପାଦପେ ହୋଇ ଆଲିଙ୍ଗିତ
ବଲ୍ଲରୀ ନିଚୟ ହୁଅନ୍ତି ଶୋଭିତ ।
କାହିଁ ବା ବିହଙ୍ଗେ କ୍ରୀଡନ୍ତି ଆନନ୍ଦେ,
ଚଢ଼ଇଁ ଡାଳେ ଡାଳେ ଛାଡ଼ି ସ୍ୱନ ମନ୍ଦେ ।
ବହେ ତହୁଁ ମୃଦୁ ମନ୍ଦ ସମୀରଣ,
ଦର୍ଶକଙ୍କ ମନ କରଇ ହରଣ ।
ତହୁଁ ଦେଖି ଦେଖି ତୋର ଦୃଶ୍ୟମାନ
କଲ୍ ତୋ ଦକ୍ଷିଣେ ନୟନ ପ୍ରସ୍ଥାନ ।
ଦେଖିଲ ଅଦୂରେ ସୁକାନ୍ତି ଦୁହିତା
ଧରି ରମ୍ୟକାନ୍ତି ହୁଏ ପ୍ରବାହିତା ।
ତାର ପରେ ପୁଣି ତଟେ ମନୋହର-
ଘନ ବନ ରାଜି ନେତ୍ର ପ୍ରୀତିକର ।
ଦେଖୁଁ ଦେଖୁଁ ଏହି ଦୃଶ୍ୟ ଅଭିରାମ,
ଆସି ମନେ ପଡ଼ିଗଲେ ବଳରାମ ।
ବଳରାମଙ୍କର ଆଦ୍ୟ ଆଗମନ
ହୋଇଥିବ ତୋର ନୟନେ ପତନ ।
ସସୈନ୍ୟ ସାମନ୍ତେ ଯେଉଁ କାଳେ ବୀର,
ଆସି ସେହି ଷଣରେ ସ୍ଥାପିଲେ ଶିବିର,
ଦେଖିଥିବୁ ତାହା ବିନା ଆୟାସରେ
କହ ବୁଢ଼ାରଜା, ସେହି କଥା ଥରେ ।
ଯେବେ ବୀର ଆସି ତୋ ରମ୍ୟ ବିପିନେ,
ମୃଗୟା ବିନୋଦେ ଭ୍ରମୁ ଭ୍ରମୁ ବନେ,

ଦେଖିଲେ ଶଶକ ଭୟେ ଭାଙ୍ଗ ଶ୍ୱାନ,
ପଳାଇଲା ଜବେ ତେଜି ସେହି ସ୍ଥାନ,
ସେହି କଥାମାନ ଥିବ ତୋ ସ୍ମରଣ,
କହି ପାରିବ କି ସେହି ବିବରଣ ।
କି ରୂପେ ଏ ଘୋର କାନନେ ବସନ୍ତି,
ବସାଇଲେ ସେହି ଆଦ୍ୟ ନରପତି,
ଶ୍ୟାମ କୁଞ୍ଜ ମଧ୍ୟେ କେତେକ ସ୍ୱରୂପ,
କାନନେ ଏ ରୂପ ନିର୍ମାଣିଲେ ଭୂପ ।
ଅବା ନୀଳାକାଶେ ଯଥା ସୁଧାକର
ଶୋଭିଲା ତୋ ବନ ମଧ୍ୟେ ଏ ନଗର
ଅବଶ୍ୟ ଏ ସବୁ ଆଶ୍ଚର୍ଯ୍ୟ ବ୍ୟାପାର
କରି ଦେଇଥିବ ତୋତେ ଚମତ୍କାର ।
ମାତ୍ର ତାହା କିପାଁ ନ କହି ତୁ ଥରେ
ମଗ୍ନ ହୋଇଅଛୁ କି ମହା ଧ୍ୟାନରେ ?
ଆହେ ବୁଢ଼ାରଜା, ତୋତେ ଏ ବିନତି
ଥାଉ ସଦା ସେହି ଧ୍ୟାନେ ତୋର ମତି
କିନ୍ତୁ ସେହି ମତି ଏ ଦେଶ ଉନ୍ନତି
ସାଧନ ପାଇଁ କି ହେଉ ଯତ୍ନବତୀ ।



# ହୀରାକୁଦ

ପ୍ରକୃତ ବଣିଙ୍କ ରଜତ ସଉଧ,
ହୀରକ ଚରଭ ରମ୍ୟ ହୀରାକୁଦ ।
ରତ୍ନପ୍ରସୂ ମହାନଦୀ ଯା' ଜନନୀ
ସେ କିପାଁ ନ ହେବ ରତନର ଖଣି !
ଏ କେତ ତୋ ଗର୍ଭେ ହୀରକ ସଦନ
ସ୍ୱର୍ଣ୍ଣମୟ ପୁଣି ତୋର ଅପଘନ ।
ମଣି କାଞ୍ଚନର ବିରଳ ସଂଯୋଗ
ତୋଠାରେ ସଫଳ ହୋଇଛି ଏ ଯୋଗ ।
ଅର୍ଜ୍ଜୁନ କୁସୁମ କରଞ୍ଜ ରସାଳ,
ପତର କଣ୍ଟା ଢୁଙ୍ଗଶିର ଶାଳ—
ଆହ୍ୱ ବହୁବିଧ ତରୁ ଅଗଣନ
ତୋର ମଞ୍ଜୁ ବକ୍ଷ କରନ୍ତି ମଣ୍ଡନ ।
କୁସୁମ ଧବଳ ଚାନ୍ଦୁଲୀ ଆଗମ
ଦୂରୁ ଦିଶେ ଆହା କେଡ଼େ ମନୋରମ !
ତୋ ପଦ ସୁବର୍ଣ୍ଣ ରେଣୁ ଶିରେ ବହି
ସୁନାରୀ ହୋଇଛି ସ୍ୱର୍ଣ୍ଣ-ପୁଷ୍ପମୟୀ ।
କେଳି କଦମ୍ବର ପୁଷ୍ପିତ ସୁମନ
ସୌରଭରେ କରେ ମୁଗ୍ଧ ପ୍ରାଣମନ ।
ଅନ୍ୟ ଅନ୍ୟ ଯେତେ ଛନ୍ତି ବୃକ୍ଷ ବଲ୍ଲୀ
ତାଙ୍କୁ ବଳି ଶୋଭା ଧରେ ବନମଲ୍ଲୀ ।
ପୁଞ୍ଜୀକୃତ ପୁଷ୍ପେ ସାଜ ସହନନ
ରଞ୍ଜି ଦେଉ ଅଛି ଦର୍ଶକ ଦର୍ଶନ ।
ଫୁଲି ବନା ଫଳେ ମଣ୍ଡି କଳେବର
ମୂର୍ଖ ଧନୀ ପ୍ରାୟେ ଶୋଭେ ଉଦୁମ୍ବର ।

ଢ଼ମିର ଭିତରେ ପୂରିଛନ୍ତି ମଶା,
ଯେହ୍ନପରି ସିନା ମୂର୍ଖଧନ ଦଶା !
ଧାତକୀ ହୋଇଛୁ ବଗିଚ ପୁଷ୍ପିକା
ହୃତ ଅଳଙ୍କାର ଯେସନ ଗଣିକା ।
ପଥ ଫୁଲମୟ ଚନ୍ଦ୍ରାତପ ଟାଣି
ସୁଖେ ଶୋଇଛନ୍ତି କାହିଁ ଛାୟାରାଣୀ ।
ଧବଳ ବାଲୁକା ରାଶି ଅଭ୍ରମୟ
ଛାୟା-ପଥ ଯଥା ଯେନ ତାରଚୟ ।
କ୍ରୋଶ ବ୍ୟାପୀ ତୋର ଦୀର୍ଘ କଳେବର
ବିଶ୍ୱ ମନୋଲୋଭା ଶୋଭାର ଆକର ।
ଚିର ସୁଶୋଭିତ ତରୁ ଲତା ଫୁଲ
ଯେନ ଶୋଭା ସିନ୍ଧୁ ହେଉଛି ଉତ୍ଫୁଲ୍ଲ ।
ଯହିଁ ଦେଖି ତହିଁ ସ୍ୱର୍ଗୀୟ ବିଭବ
ମର୍ତ୍ତ୍ୟେ କେଉଁ ରୂପେ ହୋଇଛି ସମ୍ଭବ ?
ନିରତ ଚୁମ୍ବନେ ଊର୍ଦ୍ଧ୍ୱ ଜଗତରୁ
ଏ ଶୋଭା ଆଣଇ ନଭଶ୍ଚୁମ୍ବୀ ତରୁ ।
ଧନ୍ୟ ସେ ପାଦପ ଯା' ଚୁମ୍ବନ ବଳେ
ସ୍ୱର୍ଗୀୟ ମାଧୁରୀ ଝରୁଛି ଭୂତଳେ ।
ବସି ସଂଗୋପନେ ପ୍ରକୃତି-ମହିଳା
କରୁଛନ୍ତି ଏଥି ନିତି ନବ ଲୀଳା ।
ଗାଆନ୍ତି ତହିଁରେ ପକ୍ଷୀଏ ସଙ୍ଗୀତ
ନାଚେ ତରୁ ହୋଇ ବାତେ ଆନ୍ଦୋଳିତ ।
ବାଦକ ତହିଁରେ ଚିତ୍ରୋତ୍ପଳା ଜଳ
ବଜାଏ ବାଜଣା ସଦା କଳ କଳ ।
ଦର୍ଶକ ସ୍ୱରୂପେ କାନନ ପର୍ବତ,
ଦେଖିବାରେ ସଦା ହୋଇଥାନ୍ତି ରତ ।
ଉତ୍ତରେ ଝୋହୋର ଦିଶଇ ମଞ୍ଜୁଳ
'ଜମଡ଼ା' 'ପରତା' ଆଦି ଗିରିକୁଳ ।

କେହି ଦେବାଳୟ କେହି ବା ମୁକୁଟ-
ରୂପେ ଧାରିଛନ୍ତି ନିଜ ନିଜ କୂଟ ।
ତୁଙ୍ଗ ଶୃଙ୍ଗ ଯା'ର ବ୍ୟୋମ ସ୍ପର୍ଶ କ୍ଷମ,
ଅମ୍ବୁଦ ଅଟେ ଯା' ଅଙ୍ଗ ଶାଣୋପମ,
ଯା'ର କଟି ଦେଶେ ମୁଦିର ଚରେ ଚର,
ବୁଲୁଥାନ୍ତି ମୃଗ ଶମ୍ବର ଶମ୍ବରୀ,
ବ୍ୟାଘ୍ର ଭଲ୍ଲୁକର ନିର୍ଭୟ ଗର୍ଜନ,
ଶୁଭୁଥାଏ ଯେଉଁ ସ୍ଥାନେ ଅନୁକ୍ଷଣ,
ସେ ଗର୍ଜନେ ଗୁହାସ୍ଥିତ ପ୍ରତିଧ୍ୱନି,
ଉନ୍ନିଦ୍ରେ ଯାପଇ ଦିବସ ରଜନୀ ।
ତୃଷାତୁର ପରି ଜଳପାନ ଆଶେ,
ଆସି ସେ ବସିଛି ମହାନଦୀ ପାଶେ,
ଗିରି ଦୃଶ୍ୟାବଳୀ ସେହି 'ଲହରୀ'ର
ଜଗିଅଛି ତୋର ଦକ୍ଷିଣ-ଦ୍ୱାର ।
ଦକ୍ଷିଣ, ପଶ୍ଚିମ ପୂର୍ବ ଦିଗ ନ୍ୟସ୍ତ-
ତଟିନୀ ବେତସ ଅରଣ୍ୟାନୀ ମଧ୍ୟ,
ପାଶେ ଥାଇ ସୁଦ୍ଧା ସେ ମହାକାନନେ,
ଦେଖି ନ ପାରଇ କେବେ ଏକ ଅନ୍ୟେ,
ତହିଁ ତଳେ ଧୋଇ ତରୁ ତଳ ମାନ,
ଶତ ଶତ ସ୍ରୋତ ହୁଏ ଧାବମାନ ।
କାହିଁ ହୋଇ ଖର କାହିଁ ବା ମନ୍ଥର,
ସ୍ରୋତ ସମୁଦାୟ ବହେ ନିରନ୍ତର ।
କଳ କଳ ଗାନ ମଧୁର ନର୍ତ୍ତନ—
ସହ କାହିଁ ହୁଏ ବୀଚି ସଂକୀର୍ତ୍ତନ ।
ଦୁଶ୍ଚିନ୍ତାରେ ମନ ଘାଣ୍ଟି ହେଲା ପ୍ରାୟେ
ଉର୍ମି କାହିଁ ବା ବ୍ୟସ୍ତେ ଭ୍ରମୁଥାଏ ।
କାହିଁ ରାଜେ ଗର୍ତ୍ତ ଅତଳ ଗଭୀର
ବଳିତ ଅଞ୍ଜନ ପ୍ରଭ ନୀଳ ନୀର ।

ଗର୍ଭେ ତାର ପୂର୍ଣ୍ଣ ହୋଇଛି ମତ୍ସ୍ୟରେ
ମତ୍ସଗନ୍ଧହୃଦୟୁ ଯେସନେ ମତ୍ସରେ ।
ମତ୍ସ୍ୟଜୀବୀ ଗଣ ତହିଁ ସ୍ଥଳେ ସ୍ଥଳେ
ମତ୍ସ୍ୟ ଧରୁଥାନ୍ତି ବିବିଧ କୌଶଳେ ।
ହ୍ରଦକୂଳ ବାସୀ ପଲ୍ଲୀବାଳା ଜନେ,
କାହିଁ ନଦୀ ତୀରେ ଗାହନ୍ତି ଗହନେ ।
ସେମାନଙ୍କ ନେତ୍ର-ଶୋଭା ଅପହରି,
ଭୟେ ଲମ୍ଫ ଦେଇ ପଳାନ୍ତି ଶଫରୀ ।
ଶିର ଉତ୍ଥାନ୍ୱିତ ଶୀକର ସିଞ୍ଚିତ
ନୀର ଭେଦି କେତେ ଶିଳା ବିରାଜିତ ।
ନଦୀର ମଧ୍ୟାହ୍ନେ ଏକାନ୍ତରେ ତହିଁ,
ପ୍ରାଣକାନ୍ତ ସଙ୍ଗେ ଚକ୍ରବାକୀ ରହି,
କରି କ୍ଳାନ୍ତିରାଶି ପ୍ରଶମନ,
ପ୍ରେମେ କରେ ପ୍ରିୟ ଚିବୁକ ଚୁମ୍ବନ ।
ଆଉ କେତେ କେତେ ବର୍ଣ୍ଣନା ଅତୀତ,
ଦୃଶ୍ୟରାଜି ତୋର ସୌନ୍ଦର୍ଯ୍ୟେ ସଜିତ,
ତହିଁରେ ଲେଖନୀ ରଞ୍ଜନାର ଆଶ
କଲେ, ହେବ ନିଶ୍ଚେ ବିଫଳ ପ୍ରୟାସ ।
ଶକ୍ତିହୀନ ମୁହିଁ ନମେ ଭକ୍ତି ଭରେ,
ଶାଳ୍ମଳୀ ରଞ୍ଜିତ ତୋ ରଙ୍ଗ ପୟରେ ।
ନ ଥିଲେହେଁ ମୋର ଦେଖିବାର ବଳ
ତୋ କୃପାରୁ ନେତ୍ର କରିଛି ସଫଳ ।
ତୋହୋ ଶାନ୍ତିମୟ କୋଳେ ବିଚରଣ,
କରି ମୁ ଜୀବନେ ହୋଇଅଛି ଧନ୍ୟ ।
ଏତିକି ପ୍ରାର୍ଥନା, ଘେନେ କୃପା କରି
ପାପ-ତାପ ତାର ହୃଦୁ ନିଅ ହରି ।

□

# ଶରଣ

ସୁଖର ସଂସାରେ ଭୋଗ ବିଳାସରେ
ମାତି ରହିଛନ୍ତି କେହି,
ଦୁଃଖେ ଜର୍ଜରିତ ହୋଇ କେ ଚଳଇ
ଅଦୃଷ୍ଟର ଦୋଷ ଦେଇ ।
ଏତେ ବିଷମ ବ୍ୟବସ୍ଥା
କିପାଁ କରିଛ ଲୋକ କରତା । ୧ ।

ସାରା ଜଗତରେ ତୁମରି ବିଧାନ
ଖଟୁଅଛି ନିରନ୍ତର,
ସବେ ପରା ତୁମ୍ଭ ସନ୍ତାନ ଅନନ୍ତ
କିଏ ତହିଁ ପରାପର ।
ଏହା ବୁଝିବା କଠିନ
ନର ବୁଦ୍ଧି ଅତି ସୀମାଧୀନ । ୨ ।

କୋଟି ପତି ଠାରୁ ଦୀନ ହୀନ ଯାଏ
ସମସ୍ତେ ତୁମ୍ଭର ବାଧ୍ୟ,
ତୁମ୍ଭ ଦରବାର କରେ ଯେ ବିଚାର
ନ ମାନିବ କାହା ସାଧ୍ୟ;
ତୁମ୍ଭ କୃପାରେ କେବଳ
ଧନେ ଭାସନ୍ତି ଧନିକ ଦଳ । ୩ ।

ଯେତେ ଦୀନ ଜନ ତୁମ୍ଭର ଦାରୁଣ
ଦଣ୍ଡା ଦେଶେ ଜର୍ଜରିତ,
ଭୋଗୁଛନ୍ତି ସଦା ଅଶନ ବସନ-
କଷଣ ଅପରିମିତ,

ଯହିଁ ମୁକତ ତାଙ୍କର
ତୁମ୍ଭ କାରାଳୟ ତାଙ୍କ ଘର । ୪ ।

କେତେ ପୁଣ୍ୟବାନ ପୁଣ୍ୟ କର୍ମ କରି
ରହନ୍ତି ହୋଇ ବିପନ୍ନ,
ପରମ ଆନନ୍ଦେ କେତେ ଦୁରାଚାରୀ
କରନ୍ତି ଦିନ ଯାପନ,
ଚିର କାଳ ଚିର ସତ୍ୟ
ଅତି ନିଗୂଢ଼ ଧରମ ତଥ୍ୟ ହେ । ୫ ।

ଏ ମର ସଂସାର ରଙ୍ଗମଞ୍ଚେ ମାୟା
ଦେଖାଉଛି ଅଭିନୟ
ସେ ସବୁ କେବଳ ଧରମା ଧରମ
ହରଷ ବିଷାଦମୟ
ମାୟା ପାଶ ଛିନ୍ନ ଗଲେ
ଜନେ ଜନମନ୍ତି ମହୀତଳେ । ୬ ।

କ୍ଷୁଦ୍ର ନର ଶକ୍ତି ଅଜ୍ଞାତ ସେ କଥା
କିବା ମନ୍ଦ କିବା ଭଲ
ତୁମ୍ଭ ବିବେକରେ ଯା' ହେବା ଉଚିତ
ପ୍ରଭୁ ! ତା କର ସଫଳ
ଆହେ ଅନାଦି କାରଣ
ତୁମ୍ଭ ପଦେ ପଶୁଛି ଶରଣ । ୭ ।



# ନବ ଜୀବନ

ରୋଗ ମୁକ୍ତ ହୋଇ    ମାନବ କେବଳ
ଲଭେ ନବ କଳେବର
କିନ୍ତୁ ତହିଁ ସଙ୍ଗେ    କି ଅବା ସମ୍ପର୍କ
ରହିଥାଏ ଜୀବନର ।
ନବ ସ୍ୱାସ୍ଥ୍ୟ ନବ-    ରକତେ ଶରୀର-
ଶକତି କଲେ ହେଁ ଲଭ,
ତହିଁରେ କି କେବେ    ଘୁଞ୍ଚି ଯାଇଅଛି
ପ୍ରାଣର କିଛି ଅଭାବ ?
ଶତ ପରାକ୍ରମ    ଲଭୁଁ, ଶତ ଶତ
ରୋଗରୁ ଲଭୁଁ ମୁକତି
ଫେରି ନ ପାରଇ    କେବେ ଯାଇ ଆମ୍ଭ
ମନ୍ଦ ଜୀବନର ଗତି ।
ଯେତେ ନବ ଜଳ    ପୂରାଇ ଦେଲେ ହେଁ
ମଳିନ ସରସୀ ଗର୍ଭେ,
ଭୂମି ଦୋଷୁଁ ତାର    ମଳିନତା ହ୍ରାସ
ହୋଇ ପାରିବକି ଲବେ ?
କୁପଥେ ଚାଳିତ    ମାନବ ଯଦ୍ୟପି
ସୁପଥେ କରେ ଗମନ,
ସଂସାର ମଧ୍ୟରେ    ସେହି ଜନ ଏକା
ଲଭଇ "ନବ ଜୀବନ" ।

□

# ଜଗତ ଈଶ୍ୱର

ଆହେ ଜଗତ ଈଶ୍ୱର ଦୀନବନ୍ଧୁ ହରି
ସକଳ ଆତ୍ମାରେ ଦେବ ଥାଉ ତୁ ବିହରି ।
କିବା ପାପୀ ପୁଣ୍ୟବାନ ଧନୀ ବା ନିର୍ଦ୍ଧନ
ସମସ୍ତଙ୍କୁ କରି ଅଛୁ ସ୍ନେହରେ ବନ୍ଧନ ।
ତୁହି ପ୍ରଭୁ ଜଗତର ଭାଗ୍ୟ ବିଧାୟକ
ମାନବର ଦୁଃଖ ଦୈନ୍ୟ ସୁଶିକ୍ଷା ଦାୟକ ।
ତୋତେ ଯେହୁ ଚିନ୍ତା କରେ ହୋଇ ଅବହିତ
ହୃଦେ ତାର ସୁଖ ସ୍ରୋତ କରୁ ପ୍ରବାହିତ ।
ମାନବ କରଇ ଯାହା ତୋହରି ଇଚ୍ଛାରେ
ଫଳାଫଳ ଭୋଗୀ ହୁଏ ପୁଣି ତୋ ବିଶ୍ୱରେ ।
ଦୁଇ ଦିନ ପାଇଁ କରୁ କାହାକୁ ମହାନ,
ତା' ପରେ ଘଟାଉ ତାର ପତନ ମହାନ ।
କରିଅଛୁ ସଂସାରକୁ ପରୀକ୍ଷା ଆଗାର
ପାପପୁଣ୍ୟ ବଶମ୍ବଦ ସଦା ତୋ' ଆଜ୍ଞାର ।
ଯାହାକୁ ତୁ ଦେଉ ଦୁଃଖ - ଅମା - ଅନ୍ଧକାର
ପରକ୍ଷଣେ ଦେଉ ସୁଖ - ଆଲୋକ - ସକା'ର ।
କାହା ଭାଗ୍ୟେ କରୁ ଦେବ ପାଷାଣ ପିହିତ
କାହାକୁ ଭେଟାଉ ଆଣି ସମ୍ପଦ ସହିତ ।
ପାପୀ ପାପ କର୍ମ କରେ ପାଇ ତୋ ଆଦେଶ
କେ ଜାଣିବ ତହିଁ ଥାଏ ତୋର କି ଉଦ୍ଦେଶ୍ୟ ।
ପୁଣ୍ୟ କର୍ମ କରି କାହା କଷ୍ଟ ହୁଏ ସାର
ପାପ କର୍ମେ ହୁଏ କାହା ଗୌରବ ପ୍ରସାର ।
ଯାହା ହୃଦେ ବସି ଯେଉଁ ବୁଦ୍ଧି କରୁ ଦାନ,
ସେହି ପଥେ ଗଲେ ଜୀବ ଦେଇ ଅବଧାନ ।

ତୁ ନ ଥିଲେ ଜୀବ ଦଣ୍ଡେ ଜୀବନ ଧାରଣ-
କରି ନ ପାରନ୍ତି, ସେଣୁ ତୁ ଆଦ୍ୟ କାରଣ ।
ବିଚିତ୍ର ତୋହର ଲୀଳା କେ ପାରିବ ବୁଝି
ଜ୍ଞାନୀଏ ନ ପାନ୍ତି ତୋର ତତ୍ତ୍ୱ, ଚକ୍ଷୁ ବୁଜି ।



# ପ୍ରାର୍ଥନା

ଆହେ ବିଶ୍ୱପତି ଭଗବାନ
ଦୁର୍ଗତିର ମୁଖେ ଧାଇଁଛନ୍ତି ଲୋକେ
କୃପାବହ୍ନି କର ପରିତ୍ରାଣ । (ପଦ)

ଅଧର୍ମର ମାତ୍ରା ହୋଇଛି ପ୍ରବଳ
ଦହିଁ ହୋଉଛନ୍ତି ମାନବ ମଣ୍ଡଳ
ଅଶନ ବସନ ହେଲାଣି ଭୀଷଣ
ହଜିଲାଣି ଏବେ ବୁଦ୍ଧିବଳ । ୧ ।

ବହୁଅଛି ବାତ୍ୟା ମହାପ୍ରଳୟର
ତା ଗର୍ଭେ ପଡ଼ନ୍ତି ଲକ୍ଷ ଲକ୍ଷ ନର,
ରକତର ଧାରେ ଭାସୁଅଛି ଧରା
ଶୁଣି ପ୍ରାଣ ହୁଏ ଥରହର । ୨ ।

ବିଶ୍ୱର ବିଧାନ ଜନେ ଅନୁକ୍ଷଣେ
ଲାଗିରହିଛନ୍ତି ପରର ଶୋଷଣେ
ପର ଅମଙ୍ଗଳେ ନିଜର ମଙ୍ଗଳ
କାମନା କରନ୍ତି ମନେ ମନେ । ୩ ।

ମାନବ ଜାତିକି ଘୋଟିଅଛି କାଳ
ଲାଗିବ ଏ ଲୀଳା ଆଉ କେତେ କାଳ
ଧନ ମନ ପ୍ରାଣ ହେଉଛି ବିପନ୍ନ
ଦଶା ଯେ ହେଲାଣି ଅସମ୍ଭାଳ । ୪ ।

ହୋଇଅଛି କ୍ରମେ ମିଥ୍ୟାର ପ୍ରଚାର
ଶଠତା ପାଇଛି ଉଚ୍ଚ ଅଧିକାର
ନିଷ୍ଠୁର ନିଧନ କରଇ ସାଧନ

ଲୋକ ବୁଦ୍ଧି ଅତି ଚମତ୍କାର । ୫ ।

ହେଲଣି ସହ୍ବା ଶକତି ଦୁର୍ବଳ
ଜୀବନ ହେଲଣି ଅତି କଲବଲ
ଅଭାବରେ ପଡ଼ି ଯାଉଅଛୁ ଘାଟି
ଚିତ୍ତେ ଜଳ ଉଠେ ଚନ୍ଦ୍ରାନଳ । ୬ ।

ଘୋଟିଛି ଚୌଦିଗେ ନିବିଡ଼ ଅନ୍ଧାର
ଦିଶୁଅଛି ଜଳ ସ୍ଥଳ ଏକାକାର
ହୋଇ ହତ ଜ୍ଞାନ ପଶୁଛୁ ଶରଣ
ଦିଅ ଦଣ୍ଡ ଅବା ପୁରସ୍କାର । ୭ ।



# ସ୍ୱାଧୀନ ଭାରତ

ଆଜି ଭାରତର କି ଘୋର ସଙ୍କଟ
କେତେ ବିଭୀଷିକା ତାର ସନ୍ନିକଟ ।
ଯେଉଁ ସ୍ୱାଧୀନତା ଲାଭ ପାଇଁ ନରେ
ଝାସ ଦେଇଥିଲେ ଅହିଂସ ସମରେ,
ଅସ୍ତ୍ର ବଳେ ବଳୀ ବ୍ରିଟିଶ ଶାସନ,
ନ ପାରିଲା କରି ଯାକୁ ନିରସନ,
ଯେତେ ଯେତେ ଛଳବଳ କଉଶଳ
ଶେଷ ହେଲା ଯେଣୁ ସମସ୍ତ ବିଫଳ,
ଛାଡ଼ି ଦେଇ ଏଡ଼େ ବିରାଟ ସାମ୍ରାଜ୍ୟ
ଚାଲିଯିବା ହେଲା ତା ପକ୍ଷେ ଅବାର୍ଯ୍ୟ ।
କୂଟ ନୀତିକୁ ସେ କରି ମୂଳମନ୍ତ୍ର,
ଚଳାଉଥିଲା ଯା' ଶାସନର ଯନ୍ତ୍ର,
ଦେଖିଲା ସେ କଳ ହୋଇଛି ଅଚଳ,
ଲଗାଇ ବସିଲା ନିଜ ବୁଦ୍ଧି ବଳ ।
ଜନମାଇ ଦେଶେ ଭୂମୂଳ ବିଭେଦ
ଭାରତର ଦେଲା କରି ଅଙ୍ଗ ଛେଦ ।
ଔଷଧ ଗଛରେ ଚାଟିଆ କଣ୍ଢ଼ି,
ଦୁଇ ଖଣ୍ଡ କରି ଗଲା ଯେସନ୍ତ ଛାଡ଼ି ।
ଏବେ ସେମନ୍ତ ବେନି ଭାଗ ବିଭାଗାନ୍ତ
ହିନ୍ଦୁସ୍ଥାନ ପାକିସ୍ଥାନ ନାମେ ଖ୍ୟାତ ।
ଆଜି ସେ କ୍ଷମତା ପାଇଅଛି ଲୋପ,
ଲିଭିଯାଇଅଛି ବ୍ରିଟିସ ପ୍ରତାପ ।
ହୋଇଛି ଭାରତ ପ୍ରକୃତ ସ୍ୱାଧୀନ ।
ବହୁ ସମସ୍ୟାର କିନ୍ତୁ ସମ୍ମୁଖୀନ ।

ଫଳ ତା କୁଟିଳ ଚକ୍ରାନ୍ତ ପ୍ରମାଦେ
ମାତିଲେ ଯବନେ ସ୍ୱାର୍ଥ ବିଦ୍ରୋହେ ।
କେତେ ନର ହତ୍ୟା ହେଲା ଅନୁଷ୍ଠିତ
ଧନ ଦ୍ୱାରା କେତେ ହେଲେ ବିଲୁଣ୍ଠିତ ।
ବହିଗଲା କେତେ ରକ୍ତର ପ୍ରବାହ
ଜ୍ୱଳିଲା ନିର୍ମମ ଲୁଣ୍ଠ ଗୃହ ଦାହ ।
ଅକାରଣ ଭ୍ରାତୃ ହତ୍ୟାର ପାତକେ
ଲିପ୍ତ ହେଲେ ଯେତେ ଯବନ ଘାତକେ ।
ନ ବୁଝିଲେ ଏଥି ହେବ ଲୋକ କ୍ଷୟ
ହେଉଛି ବ୍ରିଟିଶ ଜାତିର ବିଜୟ ।
ହୋଇଛି ଭାରତ ଦ୍ୱିଖଣ୍ଡିତ ସତ
କିନ୍ତୁ ଅବ୍ୟାହତ ଅଛି ତା ମହତ୍ତ୍ୱ ।
ବିଦେଶୀ ପ୍ରଭୁତ୍ୱ ଗଲେ ସୁଦ୍ଧା ଚାଲି
ଭାରତର ମୁଖେ ଲେପିଦେଲା କାଳି ।
ଭେଦ ଜନମାଇ ଭେଦର ଜନକ,
ଖସି ପଳାଇଲା ହୋଇ ନିଷ୍କଳଙ୍କ ।
କିନ୍ତୁ ସେହି ଭେଦେ ତାଙ୍କ ନିଜ ଦେଶ
ଦିନେ ନାହିଁ ଦିନେ ହୋଇଯିବ ଶେଷ ।
ଯେହୁ ଗାତ ଖୋଳେ ପଡଇ ସେ'ଗାତେ
ଚିର ଦିନ ଏହା ଘଟୁଛି ସାକ୍ଷାତେ ।
ଖଟାଇଲେ ଯେତେ ବିଦ୍ୟା - ବୁଦ୍ଧି - ଧନ
ସେ ସବୁ ହୁଅଇ ସିନା ଅକାରଣ ।
ପ୍ରତିଫଳ ଥାଏ ପ୍ରତି କୁକର୍ମର
ନାମାନ୍ତର ତାହା ଅଟଇ ଧର୍ମର ।
କାଳକ୍ରମେ ତାହା ହୁଏ ସନ୍ନିହିତ
ପ୍ରକୃତି ନିୟମ ସଦା ଅଲଂଘିତ ।
ଯେ ମହା ବିପଦୁ ପାଇ ପରିତ୍ରାଣ,
ଭାରତ ରହିଲେ ଯେତେ ଧରି ପ୍ରାଣ,

ନ ହୋଇ ସରବେ ଏବେ ଏକ ମତ
ନାନା ଆନ୍ଦୋଳନେ ହେଉଛନ୍ତି ରତ ।
ଏ ବାହାରେ ଆଜି ଛନ୍ତି ଯେତେ ଦଳ
ଲଗାଇ ଅଛନ୍ତି ଦେଶରେ କନ୍ଦଳ ।
ଦିଅନ୍ତି ସେମାନେ ଉଚ୍ଚ ସ୍ୱରେ ଡାକ
ହରିବେ ଦେଶର ଦୁଃଖ ଦୁର୍ବିପାକ ।
ଶାସନ କ୍ଷମତା ଲଭିବା ବାସନା
ବଞ୍ଚାଇଛି ତାଙ୍କୁ ଦେଇ ଆଶ୍ୱାସନା ।
ବୁଲୁଛନ୍ତି କରି କେତେକ ପ୍ରଚାର,
ପ୍ରତିଶ୍ରୁତି ଭ୍ରଷ୍ଟ ଏ ଦେଶ ସର୍କାର,
ଦେଉଛି ପ୍ରଶ୍ରୟ ପୁଞ୍ଜିପତି ଦଳେ,
ପୁଞ୍ଜିପତିଙ୍କର ଇଙ୍ଗିତରେ ଚଳେ,
ନ ରଖି ମନରେ ତିଳେ ମାତ୍ର ଦ୍ୱିଧା
ଦିଏ ସେମାନଙ୍କୁ ସମସ୍ତ ସୁବିଧା ।
ଫଳେ ତାଙ୍କ ଧନ ଅରଜନ ପଥ
ଏକାବେଳେ ହୋଇ ଯାଉଛି ପ୍ରଶସ୍ତ ।
ସେମାନଙ୍କ ହାତେ ସମସ୍ତ ବେପାର,
ଖେଲଖୋଲା ଚାଲେ ଚୋରା କାରବାର ।
ଯଶାଚନା ନ ଥାଏ ପଡ଼ିବାକୁ ଧରା,
ପଡ଼ିଲେ ଖସନ୍ତି ଧନ ବଳେ ପରା ।
ପୁଣି ସେହି ପଥେ ଚାଲନ୍ତି ନିର୍ଭୟେ
ଧନ ଆହରଣ କରନ୍ତି ନିର୍ଦ୍ଦୟେ
ଗୁଣେକୁ କରନ୍ତି ତିନି ଚାରି ଗୁଣ
ଯେଣୁ ସେ ଅଟନ୍ତି ଶୋଷଣ ନିପୁଣ
ସେ ଅତ୍ୟାଚାରର ପ୍ରଜ୍ଜ୍ୱଳିତ ଶିଖା-
ରୂପେ ତୋଳିଛନ୍ତି କେତେ ଅଟ୍ଟାଳିକା ।
ସୁନା ରୁପା ନୋଟ ଟଙ୍କା ଗଦା ଗଦା
ପୂରି ରହିଅଛି ତାଙ୍କ ଘରେ ସଦା ।

ଥାଟ ବାଟ ତାଙ୍କ କହିଲେ ନ ସରେ,
କାଳ କାଟୁଥାନ୍ତି ମହା ହରଷରେ
ସେମାନେ ଯେପରି ଭିନ୍ନ ଶ୍ରେଣୀ ଜୀବ,
ଲୋକ ପ୍ରତାରଣା ତାହାଙ୍କ ଆଜୀବ ।
କଲେହେଁ ସେମାନେ ସାରା ଦେଶ ଗ୍ରାସ
ହେବ ନାହିଁ ତାଙ୍କ ଲୋଭ-ଲୋଭ ହ୍ରାସ ।
ବିଗ୍ଭରନ୍ତି ନାହିଁ ଧରମାଧରମ
କରୁଥାନ୍ତି ଅତି କୁତ୍ସିତ କରମ ।
ନ ହେଲେ ହେଁ ମାଂସ ଆହାରୀ ସେମାନେ
କୁଣ୍ଠିତ ନୁହନ୍ତି ନର-ରକ୍ତ ପାନେ
ଆକୃତ ତାହାଙ୍କ ହେଲେହେଁ ମାନବ
ପ୍ରକୃତରେ ମାତ୍ର ଅଟନ୍ତି ଦାନବ ।
ସମାଜକୁ କରି ନିର୍ମୂଳ ନିଃଶେଷ,
ଧରିଛନ୍ତି ଅତି ସଦାଶୟୀ ବେଶ ।
କହୁଥାନ୍ତି ବଡ଼ ବଡ଼ କଥା ମାନ
ପରଛିଦ୍ର କେତେ କରନ୍ତି ବ୍ୟାଖ୍ୟାନ ।
କରୁଥାନ୍ତି କେତେ ଲୋକଙ୍କୁ ବିଦ୍ରୂପ
ସାବଧାନେ ତାଙ୍କି ନଜର ସ୍ୱରୂପ ।
ଆଗେ ଥାଇ କେତେ ନିରନ୍ନ ଭିକ୍ଷୁକ,
ଧନ ପ୍ରସାଦେ ସେ ପ୍ରସାଦ ଇଚ୍ଛୁକ ।
ଧନ ପାଇଁ ତାଙ୍କ କେତେ ଅଭିମାନ
ତାଙ୍କ ନେତେ ଭଦ୍ର ଅଭଦ୍ର ସମାନ ।
କଥା କହୁଥାନ୍ତି ବିବିଧ ଛଟାରେ
ଭରିଛି ହୃଦୟ ସଦା ଶଠତାରେ ।
ହେବାରୁ ଦୁଃସହ ଯବନ ପୀଡ଼ନ,
ପାକିସ୍ଥାନ ଛାଡ଼ି ଲକ୍ଷ ଲକ୍ଷ ଜନ,
ତେଜି ଗୃହ ଭୂମି ଅଶନ ବସନ,
ହରାଇ ସମ୍ପଦ ଆତ୍ମୀୟ ସ୍ୱଜନ,

ପ୍ରାଣଧେନ ଭୟେ ଆସିଲେ ପଳାଇ
ଭାରତେ ଆଶ୍ରୟ ଲଭିବାର ପାଇଁ ।
ରହିଲେ ସକଳେ ନିଶ୍ଚିନ୍ତେ ନିଃଶଙ୍କେ
ଶରଣାର୍ଥୀ ରୂପେ ଭାରତର ଅଙ୍କେ ।
ଏବେ ସେ ସୁଜଳା ସୁଫଳା ଭାରତ,
ହେଉଛି ଖାଦ୍ୟର ଅଭାବେ ଆରତ ।
ପୂର୍ବେ କେତେ ଦେଶ ତା ଅନ୍ନ ପ୍ରସାଦେ
ପୋଷୁଥିଲେ ପ୍ରାଣ ରହି ଅପ୍ରମାଦେ ।
ଆଜ ଏ'କ ତାର ଭାଗ୍ୟ ବିପର୍ଯ୍ୟୟ,
ଖାଦ୍ୟ ପାଇଁ କରେ ବିଦେଶେ ଆଶ୍ରୟ ।
ନାମ ମାତ୍ର ହେନ୍ଦ ହୋଇଛି ସ୍ୱାଧୀନ
ନା ନା ଦିଗେ ତାର ଦଶା ଅତି ହୀନ ।
ବିଦେଶୀ ନାସିନ କାର୍ପାସ ଲବଣ,
କରୁଛି ଭାରତ ଦ୍ରବଣ ଚର୍ବଣ ।
ଶିଳ୍ପ କ୍ଷେତ୍ର ତାର ନୁହଇ ପ୍ରଶସ୍ତ,
ଯନ୍ତ୍ର ଲାଗି ଏଣୁ ସବୁବେଳେ ବ୍ୟସ୍ତ ।
ବାହ୍ୟ ଆକ୍ରମଣ ପ୍ରତିରୋଧ ବଳ
ନାହିଁ, ପୁଣି ତାର ନିଜସ୍ୱ ସମ୍ବଳ ।
ଜଗତ ଅଶାନ୍ତି ବିବାଦ ବିଗ୍ରହ-
ଲୋପ ପାଇଁ ତାର ଅଶେଷ ଆଗ୍ରହ ।
ପୁଣି ତା' ସାଫଲ୍ୟ ମନ୍ତ୍ରନ କାରଣ
ବିଶ୍ୱ ମୈତ୍ରୀ ବ୍ରତ କରିଛି ଧାରଣ ।
ଦେଶୀୟ ରାଜ୍ୟର କରାଳ କବଳେ,
ପଡ଼ି କେତେ ଲୋକ ଥିଲେ କଳବଳେ
ଏବେ ତାଙ୍କ କଷ୍ଟ ହେଲା ତିରୋହିତ
ହେବାରୁ ଭାରତ ରାଷ୍ଟ୍ରେ ସମ୍ମିଳିତ ।
ବିବୃଦ୍ଧି ଭଜିଲା ରାଜ କୁଶାସନ
ବୃତ୍ତି-ଭୋଗୀ ହେଲେ ଯେତେ ରାଜାଗଣ ।

ପିନ୍ଧି କେତେ ଲୋକ ଖଦଡ଼ ପୋଷାକ,
ନା ନା ଅପକର୍ମ କଲେ ଦେଶଯାକ
ଉଚ୍ଚାରୁ ଥାନ୍ତି ସେ ମୁଖେ ଗାନ୍ଧୀ ନାମ
ମାତ୍ର ସେ ଅସତ୍ୟ ଅନ୍ୟାୟର ଧାମ ।
ଶିଖିଛନ୍ତି କେତେ ଛଳ କଉଶଳ
ବଶୀଭୂତ ତାଙ୍କ ପୁଞ୍ଜିପତି ଦଳ ।
କରୁଥାନ୍ତି ପର ପଦେ ଆତଯାତ
ପରର ଅଗ୍ନିରେ ସେକାନ୍ତି ସେ ଭାତ ।
କରନ୍ତି ଶତତ ପର ଗୁଣ ଗାନ,
ହୋଇଥାନ୍ତି ପର ବଳେ ବଳୀୟାନ ।
ଆଉ କେତେଛନ୍ତି ସ୍ୱଦେଶ ପ୍ରେମିକ
ଅଟନ୍ତି ସେମାନେ ଧୂର୍ତ୍ତ ଅଧାର୍ମିକ,
ବଖାଣି ବସନ୍ତି ନିଜ ତ୍ୟାଗୀପଣ
କାର୍ଯ୍ୟ କାଳେ ତାଙ୍କ ନ ମିଳେ ଦର୍ଶନ ।
କାହିଁଛନ୍ତି କହି କେସେ ରାଜ-ଭୃତ୍ୟ
ରାଜା ଗଲ ବନ୍ଧୁ ରାଜ୍ୟ ଶିରଚ୍ୟୁତ ।
ରାଜକୃପାଜୀବୀ ଥିଲେ ଯେତେ ପ୍ରାଣୀ
ଛାଡ଼ି ଗଲ କେତେ ଲୋକ ଦାନା ପାଣି ।
ମୁଦ୍ରା ସ୍ଫୀତି ବଢ଼ି ଯାଉଛି ଖ୍ୟିଷଣ,
ବଢ଼ି ମଧ୍ୟବିତ୍ତ ଜନଙ୍କ କଷଣ ।
ପ୍ରଚଳନ ବଢୁଛି ପଦାର୍ଥର ମୂଲ୍ୟ
ଦୁଇ ତିନ ସେର ଟଙ୍କାକୁ ଚାଉଳ ।
ତାକୁ ଚାହିଁ ବଢ଼େ ଅନ୍ୟ ଦ୍ରବ୍ୟ ଦାମ,
ଟଙ୍କାଏ ମଜୁରି ଦିନକର କାମ ।
ତହିଁ ପୁଣି ଘଟେ ଲୋକର ଅଭାବ,
ବଢ଼ିଯାଉଅଛି ଚୋରର ପ୍ରଭାବ ।
ନିମ୍ନତମ ଲୋକେ ସମାଜେ ପୂଜିତ
ଭଦ୍ର ରହିଲେଣି ହୋଇ ସଙ୍କୁଚିତ ।

ଶଠତା ଦୁଷ୍ଟତା ଜାଲ ଜୁଆଚ୍ଚୋର-
ଉପଦ୍ରବ ବାତ୍ୟା ବନ୍ଧ ଘନ ଘୋର ।
ସ୍ୱେର ଢ଼କାପ୍ରସ୍ତ କହିଲେ ନ ସରେ
ବ୍ୟାପକ ଭାବରେ କ୍ରମଶଃ ପ୍ରସରେ ।
ହତ୍ୟା ମିଥ୍ୟା ଜୁଆ ମଦ ପରିପ୍ଳୁତ-
ସମାଜ ଅବସ୍ଥା ହେଲାଣି ବିପ୍ଳୁତ ।
ଘିଅଷ୍ଟାନ, ବାସସ୍ଥାନ ବନସ୍ପତି
ଅଧିକାର କରି ରହିଛି ସମ୍ପ୍ରତି ।
ଖାଣ୍ଟି ତେଲ ଏବେ ହୋଇଛି ସ୍ୱପନ
ମିଳେ ଚଣା ଗୁଣ୍ଡ ମିଶ୍ରିତ ବେସନ ।
ପାଣି ମିଶାଯାଏ ଗୋରସେ ପ୍ରଭୂତ
ଅଟାରେ ଗୁଡ଼ଳ ଚୂର୍ଣ୍ଣ ଆବିର୍ଭୂତ ।
ଶାସନେ ମିଶିଛି କାହିଁ ଲାଞ୍ଚ ମିଛ
ଉଚ୍ଚ ଲୋକଙ୍କର ଲକ୍ଷ୍ୟ କେତେ ନୀଚ !
ଯାହା ହସ୍ତେ ପଡ଼ି ଯାଉଛି କ୍ଷମତା
ବିକଶି ଉଠୁଛି ତାର ବୁଦ୍ଧିମତ୍ତା ।
ମାନ ବଡ଼ ତହିଁ କେହି ନୁହେଁ ଊଣା
ବିନା ଲାଞ୍ଚ କଥା ଯାଏ ନାହିଁ ଶୁଣା ।
ହୋଇଥାଉ କେତେ ବଡ଼ ଅଭିଯୋଗ,
ମୁକ୍ତ ହୁଅ ଦେଇ ଦେବତାଙ୍କୁ ଭୋଗ ।
ପଶି ଏହି ରୂପେ ନା ନା କଦାଚାର
ସମାଜ ଜୀବନ କରେ କଦାକାର ।
ନାହିଁ କାହାମନେ ଶାନ୍ତି ବା ସନ୍ତୋଷ,
ସମସ୍ତେ ଦିଅନ୍ତି ଶାସନର ଦୋଷ ।
ଘଟୁଥିବା ଯୋଗୁଁ ଏ ସବୁ ବିଭ୍ରାଟ
ଲୋକେ ଖୋଜୁଛନ୍ତି ପରିତ୍ରାଣ ବାଟ ।
ମନେଥିଲା, ହେଲେ ଏ ଦେଶ ସ୍ୱାଧୀନ
ସୁଖେ ରହି ଲୋକେ କଟାଇବେ ଦିନ,

ନ ରହିବ ଆଉ ବାଦ ବିସମ୍ବାଦ
ଦୂର ହେବ ସବୁ ପାପ ପରମାଦ ।
ନ କରିବେ କେହି କାହା ପ୍ରତି ଘୃଣା,
ନ ହେବ କାହାର ଅନ୍ନ ବସ୍ତ୍ର ଊଣା ।
ତେଜିବେ ସକଳେ ହିଂସା ଅହଙ୍କାର
ନ ଥିବ ସ୍ୱଜାତି ବିଜାତି ବିକାର ।
ସକଳେ ରହିବେ ସୋଦର ସମାନ
ହିନ୍ଦୁ ମୁସଲ୍‌ମାନ ଶିଖ ଖ୍ରୀଷ୍ଟିୟାନ ।
ସଦ ଭାବ ରଖି ପରସ୍ପର ପ୍ରତି
ଦେଶମାତୃକାକୁ କରିବେ ଭକତି ।
ସଦେ ହୋଇ ଏହି ରାଷ୍ଟ୍ର ଅନୁଗତ
ରାଷ୍ଟ୍ରୀୟ ଉନ୍ନତି ଚିନ୍ତିବେ ସତତ
ସ୍ୱାଧୀନ ଭାରତେ ହୋଇ ଏକ ମନ
କରିବେ ସ୍ୱାଧୀନ ଜୀବନ ଯାପନ,
ରକ୍ଷିବା ନିମନ୍ତେ ମାତୃଭୂମି ଟେକ
ନ ହେବେ କୁଣ୍ଠିତ ଦେବା ପାଇଁ ବେକ ।
କେହି ନ କରିବେ କାହାକୁ ଅମାନ୍ୟ,
ପୂଜିବେ ମାତାଙ୍କୁ ଦେବତା ସମାନ ।
ଯା'ର ପୁଣ୍ୟ କୋଳ ଆମ୍ଭ ଜନ୍ମସ୍ଥଳ,
ବଞ୍ଚିଅଛୁଁ ଖାଇ ଯାର ଅନ୍ନ ଜଳ,
ଗଗନ ପବନ ଯାର ଅନୁପମ,
ଶିର ସୁଖକର ଶିର ମନୋରମ
ସେ ଭାରତ ମାତା ସେବାରେ ଜୀବନ
ଅର୍ପିବେ ସ୍ୱାଧୀନ ଭାରତୀୟ ଜନ ।
ସୋତ୍ସାହେ କରିବେ ସଦା ସତ କାର୍ଯ୍ୟ
ପ୍ରତିଷ୍ଠିତ ହେବ ଦେଶେ ରାମ-ରାଜ୍ୟ । *



* ଖ୍ରୀ: ୧୯୪୦-୪୫ ରେ ରଚିତ

# ଯୁଗାନ୍ତ

ଯେତେବେଳେ ବିଶ୍ୱପଟେ କରନ୍ତି ଚିତ୍ରିତ
ବିଶ୍ୱପିତା, ଧରି ନୀଳ ପୀତ ବର୍ଣ୍ଣ ତୂଳୀ ।
ଅଗ୍ରେ ତାର ଚତୁଃସୀମା ନୀଳ ବର୍ଣ୍ଣେ ଆଙ୍କି
ଚିତ୍ରନ୍ତି ଧର୍ମର ଅର୍ଦ୍ଧ ଅଂଶ ପୀତ ରାଗେ ।
ତହିଁ ପରେ ଧରି ଗାଢ଼ନୀଳ ବର୍ଣ୍ଣ ମସୀ
ଚିତ୍ରଣ କରନ୍ତି ଅନ୍ୟ ଅର୍ଦ୍ଧ ଅଧର୍ମର ।
ଚିତ୍ରି ସାରି ଯେବେ ଥରେ ଦେଖନ୍ତି ଅନାଇ
ଗାଢ଼ କୃଷ୍ଣ ଚଉଦିଗେ ରହିଅଛି ବେଢ଼ି
ପୁଣି ଅର୍ଦ୍ଧ ଅଂଶ ତାର, ଅଧର୍ମ ଅଧିକ
ହୋଇଗଲା ବୋଲି ମନେ ହୁଅନ୍ତି ଚିନ୍ତିତ ।
ବହୁକାଳ ଯାଏ ଅନ୍ୟ ଉପାୟ ନ ଦେଖି
ବିରକ୍ତେ ସେ ଚିତ୍ରପଟ କରି ଖଣ୍ଡ ଖଣ୍ଡ
ଦିଅନ୍ତି ବିନଷ୍ଟ କରି, ପୁଣି ନୂଆ ଖଣ୍ଡେ
ଆଙ୍କିବାକୁ, ହୁଏ ତାହା ଯୁଗାନ୍ତ ସେ କାଳେ ।



# ବିଶ୍ୱ ବିଦ୍ୟାଳୟ

ଅନନ୍ତ ଅସୀମ ବିଶ୍ୱ, ବିଶ୍ୱ ବିଦ୍ୟାଳୟେ,
ଚନ୍ଦ୍ର ଛନ୍ତି ଗୁରୁ ରୂପେ ଗ୍ରହ ଉପଗ୍ରହ
ନକ୍ଷତ୍ର ନିଚୟ, ଅହୋରାତ୍ର ସୃଷ୍ଟି ହେତୁ
କର୍ତ୍ତବ୍ୟ ସାଧନ ରୂପ ମହାଗ୍ରନ୍ଥ ପାଠ ।
ନାହିଁ ତିଳେ କୋଳାହଳ କ୍ଷୁଧା ବା ପିପାସା
କ୍ଲାନ୍ତ ବା ଶୟନ, ଏକ ମନେ ଏକ ଧ୍ୟାନେ
ସର୍ବେ ହୋଇଛନ୍ତି, ନିଜ ନିଜ କର୍ମେ ରତ ।
ଶିକ୍ଷା ଦାନ କରନ୍ତି ସେ ବିଦ୍ୟାଳୟେ ବସି
ଆପଣେ ପ୍ରକୃତି ଦେବୀ ଶିକ୍ଷୟିତ୍ରୀ ରୂପେ ।
ଅନନ୍ତ ସେ ଶିକ୍ଷା ପୁଣି ଅନନ୍ତ ତା ଭାବ,
ନ ହୁଏ ହୃଦୟଙ୍ଗମ ଦୁଇ ଚାରି ଦିନେ,
ଦୁଇ ଚାରି ମାସେ, ବର୍ଷେ ଅଥବା କଳପେ ।
କେ କହିବ କେବେ ତାହା ହେବ ସମାପତ ?
ମାନବର ଚିନ୍ତାତୀତ ନୁହଇ କି ତାହା ?



# ଗର୍ବ

ଗର୍ବ ଠାରୁ ବଳ ପାପ ନାହିଁ ଏସଂସାରେ
ଆଣିଦିଏ ପ୍ରଥମେ ସେ ଅନ୍ଧତା ନୟନେ,
ବଧିରତା କର୍ଣ୍ଣେ, ରସହୀନତା ରସନେ,
ଦୁର୍ବଳତା ମନେ, ଜ୍ଞାନେ ଅଜ୍ଞାନତା, ପୁଣି
ଓହ୍ଲାଇ ଆଣଇ ଓଦ୍ୱୋ ଦେବେ ନର ପଦେ,
ନରକୁ ବାନର ପଦେ, ସିଂହେ ଶଶାପଦେ;
ଅସୀମକୁ ଧରି ରଖେ ସୀମାବଦ୍ଧ କରି ।
ଉଚ୍ଚକୁ ଉଠିବା ଶକ୍ତି ହୁଏ ତା ରହିତ
ଛିନ୍ନ ପକ୍ଷ ପକ୍ଷୀ ପରି, ଗମି ନୀଚ ପଥେ,
ଯେତେ ପଡ଼େ ଅଜ୍ଞାନର ଗଭୀର ଗହ୍ୱରେ
ଉଚ୍ଚକୁ ଉଠିବା ଭ୍ରମ ହୁଅଇ ସେତିକ
ଆଲୋକରୁ ଅନ୍ଧାରର ନଥାଏ ପ୍ରଭେଦ-
ତା ନୟନେ, ମଣୁଥାଏ ଜାଗରଣ ବୋଲି-
ଶୟନକୁ, ସ୍ୱପନକୁ ପ୍ରକୃତ ଘଟନା ।



# ବିବେକୀ ବିଭୁ

ଅହୋ କି ବିବେକୀ ବିଭୁ ! ସୁଖ ବୋଲି ଯାହା
ନିର୍ମାଣି ନାହାନ୍ତି କିଛି ପଦାର୍ଥ ସଂସାରେ ।
ଫଳନ୍ତା ତା ଯଦି ବୃକ୍ଷେ ଫଳ ପ୍ରାୟ ହୋଇ
ଅବା ଫୁଟିଥାନ୍ତା ପୁଷ୍ପ ରୂପେ, ଜଳ ରୂପେ
ଅବା ବହି ଯାଉଥାନ୍ତା, ତା ହେଲେ ମାନବେ
କେତେ ଯେ ବିଦ୍ରୋହ କରି ଆପଣା ଭିତରେ
ହୋଇଯାନ୍ତେ ମରିମରି, ସୁଖ ଲଭି ଆଶେ
ସର୍ବଦା; ନିଷ୍କର୍ମା ହୋଇ କରନ୍ତେ ନିଷ୍ଫଳ
ସୃଷ୍ଟିର ଶୁଭ ନିୟମ । ଧନ୍ୟ ବିଭୋ ଯାହା
ଦେଇଅଛ ମାନବର ସ୍ୱକର୍ତ୍ତବ୍ୟେ ସୁଖ
ଯେସନେ, ବିହଙ୍ଗ ପଶୁ, ସୁଖ ଯେହ୍ନେପରି
ନିଜ ନିଜ କର୍ମେ ଦେଇ, କରିଛ ଅଶେଷ-
ମଙ୍ଗଳ ଏ ଜଗତର, ଅନ୍ୟଥା ମାନବ,
ପଶୁପକ୍ଷୀ ଜନ୍ତୁ ଯାଚୁଥାନ୍ତା ସୁଖ ଲାଗି ।



# ମହତ୍ତ୍ୱ

ମନର ସହିତ ବାସ କରଇ ମହତ୍ତ୍ୱ
ଏକାନ୍ତ ସୁଗନ୍ଧ ପୁଷ୍ପେ ସୌରଭ ସ୍ୱରୂପ ।
ନ ହୁଏ ତା ହ୍ରାସ ବୃଦ୍ଧି ମାତ୍ର ଉଚ୍ଚ କର୍ମେ,
ସେ ଫୁଲ ଯେସନ ଜଳେ ସ୍ଥଳେ ଯହିଁ ହେଲେ
ଫୁଟିଲେ, ତା ଅଙ୍ଗେ ବାସ ଥାଏ ସମଭାବେ ।
ମହତ୍ତ୍ୱ ଯା' ନାହିଁ ମନେ, ନ ହୁଏ ସେ ଧନେ-
ବଡ଼, ନୁହେଁ ଧନ ମାତ୍ର ପ୍ରବୃତ୍ତି ବୋଧକ ।
ହେଉ ପଛେ ଶ୍ୱାନ ଗଜ-ଆସନେ ଆସୀନ,
ଉପାନହ ଲେହନର ଲାଳସା ସେ କେବେ
ପାରିବ କି ଅବହେଳି ମାତ୍ରାର ଫଳେ ?
ମହତ୍ତ୍ୱ ଦାସତ୍ୱ ଶ୍ରେୟ, ଅଶେଷ ଧନର-
ଅଧୀଶ୍ୱର ହେବାଠାରୁ । କୁକ୍କୁଟ ମୁକୁଟ
ହେବ କାହିଁ ତୁଲ୍ୟ କେବେ ମୟୂର ପୁଚ୍ଛରେ ?
ଚନ୍ଦନ ପରଶେ କାହିଁ ବାସିବ ପଳାଶ ?



# ଜ୍ଞାନ

ତୃତୀୟ ନୟନ ଅଟେ ଜ୍ଞାନ ମାନବର,
ସଂସାର ନିବିଡ଼ାରଣ୍ୟେ ପଥ ପ୍ରଦର୍ଶକ ।
ବିପଦ ଅନ୍ଧାରେ କେବେ ନ ହୋଇଣ ଅନ୍ଧ
ଅଗ୍ନି ସମ ଜ୍ୱଳି ଉଠେ ହୋଇ ଦୀପ୍ତିମନ୍ତ
ରଜନୀ ଆଗମେ ଯଥା ନକ୍ଷତ୍ର ମଣ୍ଡଳ ।
ବିଶ୍ୱର ଅନନ୍ତ ତତ୍ତ୍ୱ-ରତନ ଭଣ୍ଡାର
ଚିରମୁକ୍ତ ଜ୍ଞାନ ପାଇଁ, ପଶି ତହିଁ ସଦା
(ପୁଷ୍ପବନେ ଅଳି ପ୍ରାୟ) ଅସଂଖ୍ୟ ଅଜ୍ଞାତ
ତତ୍ତ୍ୱ ଆଣି, ସଂସାରର କରେ ଜ୍ଞାତ ସାର,
ଅନ୍ଧକାରେ ଆଲୋକର ସଞ୍ଚାର ପରାଏ ।
ଯଥାର୍ଥ ମାନବ ପଦେ ହୁଏ ପ୍ରତିଷ୍ଠିତ
ଜ୍ଞାନ ପାଇଁ ଅନ୍ୟଥା ସେ ପଶୁ ଧର୍ମୀ ହୋଇ,
ପଶୁପରି କର୍ମ କରି ହୁଅନ୍ତି କୃତାର୍ଥ,
ନାମକୁ ମାନବ ମାତ୍ର ଥାଇ ଅବଶେଷ ।



( ୫୯ )

# ଚନ୍ଦ୍ର ସୂର୍ଯ୍ୟ

କେତେ କଉଶଳେ ଅହୋ ଦେଇଛନ୍ତି ଜାଣି,
ଚନ୍ଦ୍ର ସୂର୍ଯ୍ୟ ରୂପୀ ଦୁଇ ମହାଦୀପ ନଭେ
ବିଶ୍ୱପତି, ପ୍ରୟୋଜନ ନାହିଁ କେବେ ତହିଁ
ଦେବାକୁ ତଇଳ, ସଦା ଜଳୁଅଛି ତାହା
ବସୁମତୀ ହିତେ, ବିଶ୍ୱନାଥଙ୍କ ଆଦେଶେ ।
ସେହି ମହା ଦୀପାଲୋକ ପାଉଛି ଚହଟି
ଦୀନ-ଧନୀ ନୀଚ-ଉଚ୍ଚ ରାଜା ପ୍ରଜା ଗୃହ-
ବନ ଗିରି ନିର୍ବିଶେଷେ, ବିଶ୍ୱରାଜ ନେତ୍ରେ
ପଶୁ ପକ୍ଷୀ ନର ସର୍ବେ ଏକ ପ୍ରାଣୀ ପରି ?
କିନ୍ତୁ, ନର ସ୍ୱାର୍ଥପର, କରିଛି ବିଭାଗ
କେତେ ଭାଗେ ପଶୁ ପକ୍ଷୀ ନାମରେ ପ୍ରାଣୀଙ୍କୁ,
ଆଉ ଆନ କଥା କେତେ କେତେ ପଂକ୍ତି କରି
ନିଜକୁ କରିଛି ଭାଗ ଭାଗ୍ୟ ଅନୁସାରେ
ପାଶୋରିଣ ସାମ୍ୟ ମନ୍ତ୍ର ବିଶ୍ୱ ବିଧାତାର ।



# ଜଳଦ

କେଉଁ ମହାମନ୍ତ୍ରେ କ୍ରୁଦ୍ଧ ଦୀକ୍ଷିତ ଜଳଦ !
ଜଳରାଶି କେଉଁ ଗର ହୋଇଥାଏ ସଞ୍ଚିତ
ନ ବର୍ଷିବା ଯାଏ, ଯଥା ଗର୍ଭବତୀ ନାରୀ
ପ୍ରସୂତିକା ହେବା ଯାଏ ମଣେଇ ଦୁର୍ବହ
ଗର୍ଭକୁ' ତା । କିନ୍ତୁ ଜନ ରଖେ ଯେତେ ଧନ
ତେତିକି ନିଜକୁ ମଣେ ସୌଭାଗ୍ୟଶାଳୀ ।
ସ୍ୱାର୍ଥର ପଦକୁ ଶିରେ ଧରି ସମାଦରେ
ଚନ୍ଦ୍ରଚୂଡ଼ ବୋଲି ଗର୍ବ କରେ ସେ ନିଜକୁ !
ଅଧମ କି ଫଳଥାନ୍ତା ଆଉ ଗଛେ ଖୁନ୍ଦେ ?
ତୋହୋର ଦାନର ଫଳେ ଫଳ ପୁଷ୍ପବତୀ
ଧରଣୀ, ବଞ୍ଚାଏ ତାହା ଦେଇ ଜୀବ ଜୀବ ।
ବ୍ୟର୍ଥ ନୁହେ ସଲିଳର ଜୀବନ ଅଭିଖ୍ୟା ।
ନିର୍ଜୀବ ତୁ, ଦୟାଦ୍ରୂର୍ଣ୍ଣ ତୋହୋର ହୃଦୟ
କି ଅଦ୍ଭୁତ ଜୀବବାନ ମାନବ ହୃଦୟ !



# ଈର୍ଷ୍ୟା ପ୍ରତି

ମନସ-ରୋଗ ଈର୍ଷ୍ୟା ତୋର କେବେ ତ ଛାଡ଼ିଲା ନାହିଁ
ପର ଶ୍ରୀ-ଆଲୋକକୁ ନ ପାରିଲୁ କ୍ଷଣେ ସହି ।
ଚରମ ବେଦନା ପୁଣି କର୍ଣ୍ଣେ ହୁଏ ଉପଜାତ
ପଶିଗଲେ କେବେ କେବେ ପର ପ୍ରଶଂସା-ବାତ ।
କି କୁକ୍ଷଣେ ଜନନୀର ଜଠରୁ ଭୂମିଷ୍ଠ ହେଲୁ
ଏ କୁରୋଗ ଆକ୍ରମିଲା ତୋତେ ତ ସେକ୍ଷଣି ବେଳୁ ।
କର୍ଣ୍ଣ ପୀଡା, ଚକ୍ଷୁ ପୀଡ଼ା ଭୋଗି ଭୋଗି ପ୍ରତିଦିନ
ହୋଇଯାଉଅଛୁ କି'ତୋ କ୍ଷୀଣ ତନୁ ଅତି କ୍ଷୀଣ ।
ତୋ ମୁଖରୁ ଫୁଟେ ନାହିଁ କେବେ କାହୁଁ ହର୍ଷ କଥା
ଯଦି ଫୁଟେ କେବେ ତାହା, ଶୁଣି ମାତ୍ର ପର ବ୍ୟଥା ।
କି ପାପ ମୂରତି ତୋର, ଦୂରୁ ଦେଖି ତୋତେ ଜନେ,
ପୋଷିଥାନ୍ତି ନିଜନିଜ ଅନିଷ୍ଟ ଆଶଙ୍କା ମନେ
ଲୋକ ନେତ୍ରେ ଘୃଣ୍ୟ ହୋଇ କରୁ ଜୀବନ ଯାପନ,
ସମୁଚିତ ପ୍ରାପ୍ୟ ଏହା ତୋ ପରି ହୀନ-ଜୀବନ ।



# ସମୟ

ଧନ୍ୟ ଧନ୍ୟ ସମୟ ତୋ ଅଛି କେତେ ବଳ
ସମସ୍ତଙ୍କୁ ପୃଷ୍ଠେ ଧରି ପଳାଉ ଚଞ୍ଚଳ ।
କିନ୍ତୁ କେହି କେବେ ତୋତେ ପାରେ ନାହିଁ ଧରି,
ଅବା ତୋର ମହା ବେଗତେଜ ରୋଧ କରି ।
ପୃଥିବୀ ଆକାଶ ଚନ୍ଦ୍ର ଗ୍ରହ ଉପଗ୍ରହ,
ସମସ୍ତେ ତୋ ପୃଷ୍ଠେ ବସିଛନ୍ତି ଅହରହ ।
କେବେ କ୍ଳାନ୍ତ ହେଉ ନାହିଁ ଏତେ ବୋଝ ବହି
ଥକେ ପ୍ରାଣୀ କି ଆଶ୍ଚର୍ଯ୍ୟ ! ତୋ ଉପରେ ରହି ।
ବାଧେ ନାହିଁ ତୋତେ କେବେ ଖରା ନିଦାଘର
ବରଷାରେ ଭିଜେ ନାହିଁ ତୋର କଳେବର ।
ଶୀତରେ ପ୍ରାବଲ୍ୟ ତୋର ତନୁ କମ୍ପେ ନାହିଁ
ସବୁବେଳେ ସମବଳେ ଯାଉଅଛୁ ଧାଇଁ ।
କି ଖାଦ୍ୟ ତୁ ଖାଉଅଛୁ, କରି ଏତେ ଶ୍ରମ
ତୁହିପରି ସର୍ବଗ୍ରାସୀ ମହାକାଳ ସମ !



# କଳ୍ପନା

ଅନ୍ୟତମ ଧନେଶ୍ୱରୀ ବିଶ୍ୱେ, ତୁ କଳ୍ପନା-ରାଣୀ,
ତୋର ସମକକ୍ଷ ହେବ ଏକମାତ୍ର ବାଣୀପାଣି ।
ଅପାତ୍ରରେ କପର୍ଦ୍ଦକ କରୁନାହିଁ ଧନ ବ୍ୟୟ,
ସେହି ଗୁଣେ ଶ୍ରେୟସ୍କରୀ ତୁହି ମା ଅଟୁ ନିଶ୍ଚୟ ।
ଶତ ପ୍ରତିକୂଳା ଯେଉଁ କମଳା କବିଙ୍କ ପ୍ରତି
ତାଙ୍କୁ ତୁହି ଅଯାଚିତେ ବିତରୁ ବହୁ ସମ୍ପତ୍ତି ।
ଭିକ୍ଷାପାତ୍ର ହସ୍ତେ ହୋଇ ଯେହୁ ମାଗି ଜାଣେ ନାହିଁ,
କେବଳ କି ସୃଷ୍ଟି ତୋର ତା'ମନ ବୁଝିବା ପାଇଁ ?
ହୀନତାରେ ପରିଣତ ନ ହୁଏ କବି ଦୀନତା,
ଏକା ଏଥି ହେତୁଭୂତ ତୋର ପୃଷ୍ଠପୋଷକତା ।
କେତେ ଧନ ରଖିଅଛୁ, ସେବେ ଦେଖେ ତୋ ଭଣ୍ଡାର
ସର୍ବଦା ରହିଛି ପୂରି, ଏ'ତ ବଡ଼ ଚମତ୍କାର,
ନିରନ୍ତର ବିତରଣେ ନ ହୁଏ ଯାହାର କ୍ଷୟ,
ସେହି ଧନ ଅଟେ ଏକା ବିଶ୍ୱେ ମହା ପୁଣ୍ୟମୟ ।



# ସମୟ

ଧନ୍ୟ ଧନ୍ୟ ସମୟ ତୋ ଅଛି କେତେ ବଳ
ସମସ୍ତଙ୍କୁ ପୃଷ୍ଠେ ଧରି ପଳାଉ ଚଞ୍ଚଳ ।
କିନ୍ତୁ କେହି କେବେ ତୋତେ ପାରେ ନାହିଁ ଧରି,
ଅବା ତୋର ମହା ବେଗକୁ ବୋଧ କରି ।
ପୃଥିବୀ ଆକାଶ ସୂର୍ଯ୍ୟ ଗ୍ରହ ଉପଗ୍ରହ,
ସମସ୍ତେ ତୋ ପୃଷ୍ଠେ ବସିଛନ୍ତି ଅହରହ ।
କେବେ କ୍ଳାନ୍ତ ହେଉ ନାହିଁ ଏତେ ବୋଝ ବହି
ଥକେ ପ୍ରାଣୀ କି ଆଶ୍ଚର୍ଯ୍ୟ ! ତୋ ଉପରେ ରହି ।
ବାଧେ ନାହିଁ ତୋତେ କେବେ ଖରା ନିଦାଘର
ବରଷାରେ ଭିଜେ ନାହିଁ ତୋର କଳେବର ।
ଶୀତର ପ୍ରାବଲ୍ୟ ତୋର ତନୁ କମ୍ପେ ନାହିଁ
ସବୁବେଳେ ସମବେଗେ ଯାଉଅଛୁ ଧାଇଁ ।
କି ଖାଦ୍ୟ ତୁ ଖାଉଅଛୁ, କରି ଏତେ ଶ୍ରମ
ତୁହିପରି ସର୍ବଗ୍ରାସୀ ମହାକାଳ ଯମ !



( ୬୩ )

# କଳ୍ପନା

ଅନ୍ୟତମ ଧନେଶ୍ୱରୀ ବିଶ୍ୱେ ତୁ କଳ୍ପନା-ରାଣୀ,
ତୋର ସମକକ୍ଷ ହେବ ଏକମାତ୍ର ବୀଣାପାଣି ।
ଅପାତ୍ରରେ କପର୍ଦ୍ଦକ କରୁନାହିଁ ଧନ ବ୍ୟୟ,
ସେହି ଗୁଣେ ଐଶ୍ୱର୍ଯ୍ୟୀ ତୁହି ମା ଅଟୁ ନିଶ୍ଚୟ ।
ଚିର ପ୍ରତିକୂଳା ଯେଉଁ କମଳା କବିଙ୍କ ପ୍ରତି
ତାକୁ ତୁହି ଅଯାଚିତେ ବିତରୁ ବହୁ ସମ୍ପତ୍ତି ।
ଭିକ୍ଷାପାତ୍ର ହସ୍ତେ ହୋଇ ସେହୁ ମାଗି ଜାଣେ ନାହିଁ,
କେବଳ କି ସୃଷ୍ଟି ତୋର ତା'ମନ ବୁଝିବା ପାଇଁ ?
ହୀନତାରେ ପରିଣତ ନ ହୁଏ କବି ଦୀନତା,
ଏକା ଏଥି ହେତୁଭୂତ ତୋର ପୃଷ୍ଠପୋଷକତା ।
କେତେ ଧନ ରଖିଅଛୁ,ଯେବେ ଦେଖେ ତୋ ଭଣ୍ଡାର
ସର୍ବଦା ରହିଛି ପୂରି, ଏ'ତ ବଡ ଚମତ୍କାର,
ନିରନ୍ତର ବିତରଣେ ନ ହୁଏ ଯାହାର କ୍ଷୟ,
ସେହି ଧନ ଅଟେ ଏକା ବିଶ୍ୱେ ମହା ପୁଣ୍ୟମୟ ।



# ପରିଚୟ

କର୍ମୀ ବୋଲି ତେବେ ଯାଇ ହୋଇପାର ପରିଚିତ
ଯଦି ତୁମ୍ଭ ଶକ୍ତି ଥାଏ ସାଧିବାକୁ ପରହିତ ।
ଇଚ୍ଛାଥିଲେ ଦେଖାଇବା ପାଇଁ ନିଜ ଜ୍ଞାନୀ ପଣ,
ଦେଖାଅ ତୁମ୍ଭର ଜ୍ଞାନ ଲଭିଛନ୍ତି କେତେ ଜଣ ।
ପ୍ରଶଂସ୍ୟ ହେବାର ଆଶା ହୃଦେ ଯେବେ ପୋଷିଥାଅ,
ପର ପରଶଂସା ଗାଇ ଭଲ କରି ଗାଇଯାଅ ।
ପ୍ରଫୁଲ୍ଲ ହୃଦୟେ ତେବେ ଯାଇ ଶତ୍ରୁ-ଗର୍ବ ବନ୍ଧ,
ପାରିବ ସେ କାଳେ କରି ଆପଣାକୁ ଆପେ ଜୟ ।
ଦେଶସେବା କାର୍ଯ୍ୟେ କର ଆପଣାକୁ ନିୟୋଜିତ
ଦେଶନେତା ନାମେ ହେବ ଅଚିରେ ସୁଅଭିହିତ
ଅଭିମାନୀ ବୋଲି କେହି ନ ପାରିବେ ନିନ୍ଦା କରି,
ଅଭିମାନ କର ଏକା ସ୍ୱଜାତିର ଟେକ ଧରି ।
ମହତ୍ତ୍ୱ ତୁମ୍ଭର ତଳେ ଅପରିଚିତ ହେବ ନାହିଁ,
ସ୍ୱଦେଶୀୟ ସମସ୍ତଙ୍କୁ ଯଦି ଡାକ, 'ବଡ଼ ଭାଇ' ।



# ମହାଯଜ୍ଞ

କି ପବିତ୍ର ମହାଯଜ୍ଞ ଲାଗିଛି ଜଗତେ
ରତିଛନ୍ତି ତହିଁ କେତେ ହୋତା ଅବିରତେ ।
ରାତି ଦିନ ଭେଦ ଭାବ କରି ବିସ୍ମରଣ,
ନିଷ୍ଠା ସହ କରୁଛନ୍ତି କର୍ତ୍ତବ୍ୟ ପାଳନ ।
ସେ ଯଜନ କୁଣ୍ଡେ ଜଳେ ହୋଇ ଉଗ୍ରତର,
କରାଳ ବିଗ୍ରହଧାରୀ କାଳ ବୈଶ୍ୱାନର ।
କରି ତା' ଚୌଦିଗେ ବେଶ୍ମ ବକ୍ଷ ସୁଶୋଭିତ
ହୋତା-ବେଶୀ ଜୀବକୁଳ ଚିର ବିରାଜିତ ।
ନିକ୍ଷିପ୍ତ କରନ୍ତି ତହିଁ ସମିଧ ପରାଏ,
ଆତ୍ମ ମୁଖେ ଆତ୍ମ ତ୍ୟାଗୀ ଜୀବେ ଆତ୍ମକାୟେ ।
ଆୟୁ ଆହୁତି ପୁଣି ଦେଇ ଅନୁକ୍ଷଣେ
ଚରିତାର୍ଥ ହେଉଥାନ୍ତି ସର୍ବେ ମନେ ମନେ ।
ଧନ୍ୟ ସେ ଯାଜ୍ଞିକ, ଧନ୍ୟ ମହା ତ୍ୟାଗ ବ୍ରତ,
ଏଥିଲାଗି ସିନା ସୃଷ୍ଟି ଶ୍ରେଷ୍ଠ ତା' ମହତ୍ତ୍ୱ ।



# ବଡ଼ ସାନ

ଆହେ ବଡ଼ ବଡ଼ ଜଣ ନ ମଣ ସାନଙ୍କୁ ହୀନ,
ତୁମ୍ଭ ହାତକର କାର୍ଯ୍ୟ ସାନ ସିନା ସୁପ୍ରକାଶ !
ସାନ କର୍ମ ଫଳ ସିନା ତୁମ୍ଭେ କର ଉପଭୋଗ
ବଡ଼ ପଣ ଦେଖାଇବା ପାଇଁ ପାଉଛ ସୁଯୋଗ ।
ସାନ ଏକା ଭୂମି ଚଷି ଯୋଗାଏ ଅନ୍ନ ବସନ,
ଶିଶୁ ପରି ତୁମ୍ଭଙ୍କୁ ସେ ଯତ୍ନ କରେ ଅନୁକ୍ଷଣ ।
ଅସାଧ ବସ୍ତୁର ମନେ ଯହୁଁ ଯାଇ ଦୂରେ ରହ,
ତୁମ୍ଭ ସାନ ଭାଇ ସାଧ କରିପାରେ କେ’ନା କହ ?
ସାନ ଯାହା କରିପାରେ ତୁମ୍ଭେ କ ତହିଁକି କ୍ଷମ ?
ଏଥୁ ଭାଇ ବୁଝି ନଅ ତୁମ୍ଭର ସ୍ୱକୀୟ ଭ୍ରମ ।
କର୍ମହୀନ ହୋଇ ହେଅ ବଡ଼ଭାଇର ପରିଚୟ
ସାନ ଢାଙ୍କି ଦେଇଥାଏ ତୁମ୍ଭର ଦୋଷ ନଚୟ ।
ଏଥିଲାଗି ସାନ ପ୍ରତି ହୀନ ବସ୍ତୁର ନ କର
ସର୍ବେ ଆପଣାର କର୍ମେ ଜାଣିଥାଅ ଧୁରନ୍ଧର ।



# ବିନୟ ପ୍ରାର୍ଥନା

ହେ ଦୟାସାଗର ହରି ଦୀନ ଦୁଃଖ ହର
ଭବ ଯାତନାରେ ପ୍ରାଣ ହେଉଛି କାତର ।
ତୁମର ଇଚ୍ଛାରେ ପ୍ରଭୋ ଜଗତ ଚାଳିତ
କର ମୋର ଦୋଷରାଶି ସଦୟେ କ୍ଷାଳିତ ।
ଜଗତ ଦିଶଇ ମୋତେ ଅନ୍ଧକାରମୟ
କେତେ କାଳ ଭୋଗୁଥିବ ଏ କଷ୍ଟ ନିଚୟ ।
ଭୀଷଣ ଚିନ୍ତାରେ ମନ ହେଉଛି ଅସ୍ଥିର
ହ୍ରାସ ହେଉଅଛି ଦିନୁ ଦିନ ଶକତିର ।
ନୈରାଶ୍ୟ ସାଗରେ ଭାସି ବ୍ୟାକୁଳ ହୃଦୟେ,
ଶରଣ ପଶୁଛି ପ୍ରଭୋ ତୁମ୍ଭ ପଦ ଦ୍ୱୟେ ।
ମହାକ୍ଷମାର ସାଗର ଅଟନ୍ତି ଆପଣ,
ଦୀନେ କ୍ଷମା ଦେବା ପାଇଁ ନ ହୁଅ କୃପଣ ।
ହୃଦବ୍ୟାକୁଳତା-ଜାତ ନୟନ ପୟରେ
ଧୋଇ ଦେଉଥିବି ସେହି ପବିତ୍ର ପୟରେ ।



# ମାଗୁଣି

କେତେ ପରକାରେ ନିରାଶେ କାତରେ ତୁମ୍ଭର ଚରଣେ ଲୋଟିଲି
ତଥାପି ହେ ଦୟାନିଧି ମୁଁ ଅବଧି ତୁମ୍ଭଙ୍କୁ କେବେ ନ ଭେଟିଲି ।
ଏ ସାରା ସଂସାର ସରା ତୁମ୍ଭୁନ୍ଦର ଦରଶନ ଦାନେ କୃପଣ-
କିପାଁ ହୁଅ ନାଥ, ଦେଖା ଦେଲେ କିବା ନିଉନ ହେବ ପ୍ରଭୁପଣ ?
ସପତ ସାଗର ଜଳ ମହୀଧର ଖୋଜି ଖୋଜି ହେଲି ସ୍ତକିତ
ନ ପାଇଲି କାହିଁ ତୁମ୍ଭର ସନ୍ଧାନ ହେଲି ସନ୍ଦେହରେ ଚକିତ ।
କିଏ ଜାଣେ ତୁମ୍ଭ ସ୍ୱରୂପ କି ରୂପ କରି ନୁହଇ ତା କଳନା,
ସାରା ବ୍ରହ୍ମାଣ୍ଡରେ ବ୍ୟାପିଅଛ, ମୁଁ ଯେ ତା ତୁଳେ ତୁଚ୍ଛ ଧୂଳିକଣା ।
ତୁମ୍ଭେ ଭବମୟ ଅଭାବ ଯେ ମୋତେ ଗ୍ରାସିରହିଛି ରାତିଦିନ,
ଅଶେଷ ଶକତିଧାରୀ ତୁମ୍ଭେ, ତହିଁ ମୁଁ ସିନା ଅତି ସାନହୀନ ।
ହେ ମହାମହିମ, ଅନନ୍ତ ଅସୀମ କେମନ୍ତେ ପାଇବି ତୋ ସାକ୍ଷାତ
ଦୃଷ୍ଟି ସୀମାତୀତେ ଦୃଷ୍ଟି-ମଧ୍ୟ-ଗତ କରିବା ବାସନା କି ଭ୍ରାନ୍ତ !
ନ ଦିଅ ପଛେ ସେ ଦରଶନ, ଯାହା ଯୋଗେ ହେବ ଜନ୍ମ ସଫଳ,
ପର ଉପକାରେ ଏ ଜୀବନ ଯାଉ ଦିଅ ଦେହରେ ବୁଦ୍ଧିବଳ ।



# ପରିଚୟ

ଅତିଶୟ ନ୍ୟାୟବାନ କଏ କହ ଏ ସଂସାରେ ?
ସାନ ବଡ଼ ଭେଦ ଭାବ ନ ଥାଏ ଯାହା ବସ୍ତୁରେ !
ପ୍ରକୃତ ଅର୍ଜନ କ୍ଷମ କେଉଁ ଜନ ? ସେହିପରି
ସମସ୍ତଙ୍କ କଥା ଶିଖେ ସେହୁ ଗୁରୁଜ୍ଞାନ କରି ।
ପରମ ଧାର୍ମିକ ବୋଲି ଚିହ୍ନିବ କି ଗୁଣ ଦେଖି ?
ପ୍ରତିକାର୍ଯ୍ୟେ ହୋଇପାରେ ଯେ ଧର୍ମର ମୁଖାପେକ୍ଷୀ
ଉଦାର ହୃଦୟ ଆଖ୍ୟା ତା ପ୍ରତି ପ୍ରବର୍ତ୍ତିପାରେ
ଯେ ରଖି ପାରନ୍ତି ଗାଢ ଆତ୍ମୀୟତା ପରଠାରେ ।
ସାହିତ୍ୟିକ ବୋଲି ଶ୍ରଦ୍ଧା ଅର୍ପଣ କରିବ ତାକୁ
ସାହିତ୍ୟିକ ବୋଲି ଯେହୁ ନ ଚିହ୍ନାଏ ଆପଣାକୁ ।
ବଡ଼ଲୋକ ମଧ୍ୟେ ଗଣ୍ୟ ହେବାର ସେ ଉପଯୋଗୀ
ଦେଶ ହିତେ କୃପଣତା ରୋଗେ ଯେ ନୁହଇ ରୋଗୀ ।
ଏ ଜଗତେ ଗୁରୁଜ୍ଞାନେ କହତ ପୂଜିବା କାରେ ?
ଶିକ୍ଷାଗୁରୁ ଯାର ଯେତେ ରହିଛନ୍ତି ଏ ସଂସାରେ ।



# ହେ ଜଗତପତି

ଦେଖୁଛି ହେ ହରି, ବିରାଜୁଛ ତୁମ୍ଭେ, ପ୍ରାଣୀଗଣ ପ୍ରାଣେ ପ୍ରାଣେ,
ବନ ଉପବନେ, ପଲ୍ଲବ ପ୍ରସୂନେ, କୋକିଳର କୁହୁତାନେ,
ରବି ଶଶୀ ତାରା ତୁମ୍ଭର ଆଭାରେ ହୁଏ ସଦା ପ୍ରଦୀପିତ,
ଅନିଳ ଅନଳ ଗଗନମଣ୍ଡଳ ମଧ୍ୟେ ତୁମ୍ଭେ ଅଧିଷ୍ଠିତ ।
ନଦୀ ସିନ୍ଧୁ ବକ୍ଷେ ରହିଛ ଅଲକ୍ଷେ, ଜାଣି ନ ପାରଇଁ ନାଥ,
କଳାପୀ କଳାପେ ତୁମ୍ଭ ମନୋହର କାନ୍ତି ହୁଏ ପ୍ରତିଭାତ ।
ବିବିଧ କୁସୁମେ ରଞ୍ଜିତ କରୁଛ ଧରି ନାନା ବର୍ଣ୍ଣ ତୂଳୀ,
ସାଧୁ ସଦଗୁଣେ ତୁମ୍ଭ ରୂପ ରାଶି ସ୍ୱଭାବେ ପଡ଼େ ଉଚ୍ଛୁଳ ।
ମହତୁ ମହତ କ୍ଷୁଦ୍ରୁ କ୍ଷୁଦ୍ରତରେ ସବୁରେ କରୁଛ ବାସ,
ସେଥିପାଇଁ ସିନା ମହାଜନେ ନାମ ଦେଇଛନ୍ତି ବିଶ୍ୱବାସ ।
ସୃଷ୍ଟି ସ୍ଥିତି ଲୟ ତୁମ୍ଭ ମଧୁମୟ ନିୟମର ଆଜ୍ଞାଧୀନ
ତୁମ୍ଭ ବିନା କେହି ନ ପାରନ୍ତି ରହି କିନ୍ତୁ ତୁମ୍ଭେ ଉଦାସୀନ ।
ହେ ଜଗତପତି ଜଗତ-ମୂରତି କରୁଅଛି ପ୍ରଣିପାତ,
ତୁମ୍ଭର ମଙ୍ଗଳ ବିଧାନ କରୁ ମୋ ଜୀବନେ ଆଲୋକପାତ ।



# ପଦ୍ମିନୀ

[ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ପ୍ରଣୀତ
ଅସଂପୂର୍ଣ୍ଣ 'ପଦ୍ମିନୀ' କାବ୍ୟର ଉତ୍ତରାର୍ଦ୍ଧ ]

□□□

## ଷଷ୍ଠ ସର୍ଗ

ମନମତ୍ତ ଦିଲ୍ଲୀପତି ନିରାନନ୍ଦ ମନେ,
ନିରନ୍ତର ନାନା କଥା ଚିନ୍ତେ ନିରଜନେ ।
ଭାବଇ ସେ କେତେବେଳେ ଭୀମ ସିଂହ ସ୍ଥିର,
କରୁଅଛି ଅପମାନ ମୋର କ୍ଷମତାର ।
ବିଶାଳ ଭାରତ ଯା'ର କରତଳଗତ,
ବିଶାଳ ଭାରତେ ଯେହୁ ଅଟେ ଏକଛତ୍ର,
ଦିଲ୍ଲୀ ଯା'କୁ କରିଅଛି ମସ୍ତକେ ଧାରଣ
ଆକୁମାରୀ ହିମାଚଳ ପଶେ ଯା' ଶରଣ,
ଭାରତର ଜଳସ୍ଥଳ ପର୍ବତ ପ୍ରାନ୍ତର,
ହେଉଛନ୍ତି ଯା'ର ମହା ପ୍ରତାପେ କାତର,
ଧନୀ ଯୋଗାଉଛି ଧନ ଯା' ଆଜ୍ଞା ପ୍ରମାଣେ
ପାଦେ ଯା'ର ସମର୍ପଣ ମାନୀ କରେ ମାନେ,
ସତୀ ଆଣି ଦେଇ ନିଜ ସତୀତ୍ୱ ରତନେ,
ବ୍ରତୀ ହୋଇଅଛି ଯା'ର ସେବାରେ ଯତନେ,
ରୂପସୀ ଦିଅଇ ହସି ରୂପ ଉପହାର,
ଅବିରତ ଆକର୍ଷିତ ହୋଇ ପ୍ରେମେ ଯାର,
ଓହୋ ଏ କି ହେଲା ତାର ଘୋର ପରିଣତି,
ସଙ୍ଗେ ସଙ୍ଗେ ସଙ୍ଘଟିତ ସମ୍ଭ୍ରମ ସଂହତି ।
ବୃଥା ହେଲା ଏତେ କାଳ କଲି ଯେତେ ଶ୍ରମ,
ଧସିଗଲା ଏଥି ମୋର କାମନା-ସଂଯମ ।
କି କାରଣ ରଖି ଏହି ଚତୁରଙ୍ଗ ବଳ,
କିବା ହିତ ସମ୍ପାଦିଲେ ଏତେ ସୈନ୍ୟବଳ;
କି କର୍ମ ସାଧନ କଲେ ବୁଦ୍ଧି କଉଶଳ,
ସମ୍ରାଟ ପଦବୀ ଲଭେ ଅବା କିସ ଫଳ ?

ଛି' ଛି' ଏହି ରାଜ ପଦେ କିଛି ସୁଖ ନାହିଁ,
ବୋହିଥିବ ଏତେ ବୋଝ ବୃଥାରେ କିପାଇଁ ?
ଯାଉଅଛି ଦିଲ୍ଲୀ ଫେରିଯିବ ମୁ ବହନ,
ବିସର୍ଜିବ ରାଜ୍ୟ ସହ ରାଜ ସିଂହାସନ ।
କିପାଁ ରଖିଥିବ ଆଉ ଏ ଧନ ରତନ,
କରିବି ତା' ଦାନ ଦୁଃଖୀ-ଜନେ ବିତରଣ ।
ଧରି ଯୋଗୀ ବେଶ ହେବି ଅରଣ୍ୟ ନିବାସୀ,
ଆନନ୍ଦେ ରହିବ ହୋଇ ଫଳମୂଳ ଆଶୀ ।
ପିଇବ ନିର୍ଝର ଜାତ ସୁଶୀତଳ ଜଳ,
ପିନ୍ଧିବ ସହଜଲଭ୍ୟ ବୃକ୍ଷର ବକଳ ।
ଶୋଇବ ନିଶ୍ଚିନ୍ତ ମନେ ମୃଗ-ଚର୍ମା-ସନେ
ମୋହିବ ଭଜନ ଗାନେ ବନ୍ୟ ଜୀବଗଣେ ।
ସଂଯମ-ଅସ୍ତରେ କରି ରିପୁଙ୍କୁ ନିହତ,
କରୁଥିବି ଅନୁଧାନ ଈଶ୍ୱରେ ନିୟତ ।
କାମନା ଅଟଇ ସର୍ବ ଦୁଃଖର ନିଦାନ,
ସର୍ବାଗ୍ରେ କରିବ ତାର ବିନାଶ ବିଧାନ ।
ନିରାଶେ ଏ ରୂପ-ଚିନ୍ତା ନ ହେଉଣୁ ଶେଷ
ଆଶାର ଆଗାର ହୃଦେ କରେ ପରବେଶ ।
କେବେ ଧରି ମନୋହର ମୂରତି ମୋହିନୀ
ଟାଣିନିଏ ମନକୁ ତା' ଆଶା-ପିଶାଚିନୀ ।
ଆଶ୍ୱାସ ବଚନେ ତାକୁ କରି ପ୍ରବୋଧିତ,
ମାୟା ଜାଲେ କରିଦିଏ ତାହେ ବିଜଡ଼ିତ ।
ଶୁଣି ତା' ବଚନ ପୁଣି ଚାହିଁ ତା' ସୁମୁଖ,
ହୋଇଯାଏ ଦୂରୀଭୂତ ସମ୍ରାଟର ଦୁଃଖ ।
ଉପଗତ ହୁଏ ପୁଣି ମନେ ନବ ବଳ,
ଆଶାର ଆଲୋକେ ଦିଶେ ଚୌଦିଗ ଉଜ୍ଜ୍ୱଳ ।
ଗଢ଼ିବସେ ମନେ ମନେ ସୁଖର ଭବନ,
ନବ ବଳେ ବଳୀୟାନ ପୁଣି ସେ ଯବନ ।

ଏ ରୂପେ ତା' ହୃଦ କ୍ଷେତ୍ରେ ଆଶା ନୈରାଶ୍ୟ
କରୁଥାନ୍ତି ନିଜ ନିଜ ବୀରତ୍ୱ ପ୍ରକାଶ ।
ବହୁକାଳ ବେନି ବୀର ରଚି ଘୋର ରଣ,
ଶ୍ରାନ୍ତ ହୋଇ ଶେଷେ କଲେ ସନ୍ଧି ସଂସ୍ଥାପନ,
ସମ୍ରାଟ ମାନସ ହେଲା ତେବେ ଯାଇ ଶାନ୍ତ,
କ୍ରମେ ଧରାଧାମେ କଲା ପ୍ରବେଶ ନିଶାନ୍ତ ।
ଉଠେ ତୋଳି ବୀଣାଜିଣା ସ୍ୱର ସୁକୋମଳ,
ଗାଇଲେ ପ୍ରଭାତୀ ଗୀତ ପକ୍ଷୀକୁଳ ଦଳ ।
ସମୀରଣ କରି ପୁଷ୍ପ-ବାସ ଆହରଣ,
ଧୀରେ ଧୀରେ ଗୃହଦ୍ୱାରେ କଲା ବିଚରଣ ।
କ୍ରମେ ନଭେ ସମୁଦିତ ସହସ୍ର-କିରଣ,
ଧରଣୀରେ ବିକୀରଣ କରି କିରଣ ।
ଏ ସମୟେ କ୍ଷଣସ୍ଥାୟୀ ନିଦ୍ରାରେ ସ୍ୱପନେ,
ଯାଇ ଉପଗତ ଆତ୍ମା, ପଦ୍ମିନୀ ସଦନେ ।
ଦେଖିଲା ସେ ଭୀମ ସହ ପଦ୍ମିନୀ ରୂପସୀ,
କରୁଛନ୍ତି ପ୍ରେମାଳାପ ଏକାସନେ ବସି ।
ପଦ୍ମିନୀ ଉରସେ ଶୋଭେ ତା ପ୍ରେମ ହାର,
ଶିରେ ମଣ୍ଡିଛନ୍ତି ଭୀମ ତାର ଉପହାର ।
ପଦ୍ମିନୀର ରୂପରାଶି ଅଗ୍ନିତେଜେ ଜଳେ,
ହାସ୍ୟ ବିଭା ବିଭାସିତ ଶ୍ରୀ ମୁଖ ମଣ୍ଡଳେ ।
ତାଙ୍କୁ ଦେଖି ଦୁହେଁ କଲେ ସାଦର ସମ୍ମାନ,
ବିନୟେ କହିଲେ କରିବାକୁ କ୍ଷମାଦାନ ।
ସହସା ଭୀଷଣନାଦୀ ବନ୍ଧୁକ ଗର୍ଜନେ
ଉଠିଲା ଜାଗ୍ରତ ହୋଇ ସମ୍ରାଟ ସେ'କ୍ଷଣେ ।
ଦେଖିଲା ସେ ଶୋଇଅଛି ଶିବିର ଭିତରେ,
ଭୀଷଣ ଯାତନା ଜାତ ହେଲା ତା' ଅନ୍ତରେ ।
ନୀରବ ନିଶ୍ଚଳ ହୋଇ ରହି କିଛି କ୍ଷଣ,
ସ୍ୱପନ ବୃତ୍ତାନ୍ତେ କଲା ମନ ନିବେଶନ ।

ଜନମ ତାର ମତ ହେଲା ଲେଖାକୁନ ଅନ୍ତି,
ସ୍ୱପନକୁ ଦେବା ପାଇଁ ବାସ୍ତବ ମୂରତି ।
କ' ଉପାୟେ ହୋଇପାରେ ସିଦ୍ଧ ମନୋରଥ,
ବିପଦ ରହିତ ହେବ ଗମନୀୟ ପଥ ।
ଭାବି ଭାବି କେତେ କାଳ ଏ ଭାବେ ଅତୀତ
ପ୍ରକୃତ ସିଦ୍ଧାନ୍ତେ ଶେଷେ ହେଲା ଉପନୀତ ।
ତରତରେ ପ୍ରାତଃକୃତ୍ୟ କରି ସମାପନ,
ତରତରେ ଧୋଇଁ ତାର ଶ୍ମଶ୍ରୁଳ ଲପନ,
ତରତରେ କରି ମସୀ-ପାତ୍ର ଆନୟନ,
କାଗଜ କଲମ କଲା ଶ୍ରୀ କରେ ଧାରଣ ।
ହୋଇ ଅତି ଧୀର ମତି ଗମ୍ଭୀର ପ୍ରକୃତି,
ଲେଖିଲା ପତ୍ରେଟିଏ ଧରି ବହୁ ଧୃତି ।
"ସମ୍ମାନ-ଆସ୍ପଦ ସର୍ବ ଗୁଣ ଅଲଂକୃତ,
ଉଦାର ହୃଦୟ ଆର୍ଯ୍ୟ ବୀର୍ଯ୍ୟ ଅହଂକୃତ,
ପରମ ଧାର୍ମିକ ହଂସ-ବଂଶ-ଅବତଂସ,
ନରବର ବରାଦର୍ଶ ସୁମନସ ଅଂଶ ।

ସର୍ବଜନ ମାନ୍ୟ ସର୍ବଜନ ଆଲମ୍ବନ,
ଚିତୋର ନିୟତି ଦାତା ଚତୁର ଆନନ ।
ରାଜନୀତି ବିଚକ୍ଷଣ ନ୍ୟାୟ ପରାୟଣ,
ପରଜା ପାଳକ ନରରୂପୀ ନାରାୟଣ
ପର ଉପକାରୀ ପରତାପ ପରଟର
ପର ସରଜନ ନାଶୀ ପରମେଶ ହର ।
ସର୍ବ ସୁଲକ୍ଷଣବନ୍ତ ଅଟ ହେ ଲକ୍ଷ୍ମଣ,
ସର୍ବ ସୁଲକ୍ଷଣବନ୍ତ ଯେମନ୍ତ ଲକ୍ଷ୍ମଣ ।
ତେଜର ନିଦାନ ଯଥା ପଦ୍ମିନୀ-ନାୟକ,
ତେଜର ନିଧାନ ତୁମ୍ଭେ ପଦ୍ମିନୀ-ନାୟକ ।
ମୂର୍ତ୍ତିମାନ କ୍ଷାତ୍ର ତେଜ ରୂପେ ବେନି ଜନ,
ଅବନୀରେ କରିଅଛ ଜନମ ଗ୍ରହଣ ।

ଚିତୋର ଗର୍ବିତା ପାଇ ତୁମ୍ଭ ପରି ପତି
ମସ୍ତକେ ତା' ବିରାଜିତ ସ୍ୱାଧୀନତା ଛତ୍ର ।
ସଂରକ୍ତ ମଣ୍ଡନେ ତା'ର ଲଲାଟ ମଣ୍ଡିତ,
ଆତ୍ମ ନିର୍ଭରତା ବସ୍ତ୍ରେ ଗାତ୍ର ସୁଶୋଭିତ ।
ଅନୁବର୍ତ୍ତୀଛନ୍ତି ସଦା ତୁମ୍ଭ ପ୍ରଜାମାନେ,
ଚିରାଭ୍ୟସ୍ତ ମାତୃଭୂମି ହିତେ ପ୍ରାଣଦାନେ ।
ପ୍ରଜାଙ୍କୁ ପାଳନ କରୁଅଛ ପୁତ୍ରବତ
ଧର୍ମ ପଥେ କରୁଅଛ ଗମନ ସତତ ।
ଦେଖି ତୁମ୍ଭ ଦେବତୁଲ୍ୟ ଉଚ୍ଚ ବ୍ୟବହାର
ଅପାର ଆନନ୍ଦ କରେ ମୋ ହୃଦ ବିହାର ।
ନ ଇଚ୍ଛଇ ତୁମ୍ଭ ସଙ୍ଗେ କରିବାକୁ ରଣ
ବରଞ୍ଚ ଇଚ୍ଛଇ କରିବାକୁ ବନ୍ଧୁପଣ ।
ଦୁଃଖମୟ ଏ ସଂସାରେ ହୋଇ କେ' ଅମର
ଚିର ଦିନ ରହିଅଛି ଅବା କରି ଘର ।
ଦିନ କ୍ଷଣ ଚେଣି କାଳ ରହିଅଛି ଥାକି,
କାହାକୁ ରଖିବ ନାହିଁ ଶେଷରେ ସେ'ବାକି ।
ବଳୈଶ୍ୱର୍ଯ୍ୟ ଧନ ଜଣ ସବୁ ତା' ଅଧୀନ
ଦିନେ ହେଲେ ହେବେ ସେହି କାଳ ଗର୍ଭେ ଲୀନ ।
ଚୂର୍ଣ୍ଣ ହୁଏ ମନୁଷ୍ୟର ଦମ୍ଭ-ଅହଂକାର,
ବଜ୍ର ସୁକଠିନ ଦନ୍ତ-ଯନ୍ତ୍ରରେ ତାହାର ।
ଜାଣି ଜାଣି ଏ ସକଳ ଅଯଥା ବିବାଦ
ଭିଆଇବା କେବେ ନୁହେଁ ପରଶଂସାବାଦ ।
ଏଥିରେ ନା' ଲଭ ହେବ କ'ଦେବ ପୌରୁଷ,
ଯେଉଁ ମନୁଷ୍ୟକୁ ରହିଥିବା ସେ ମନୁଷ୍ୟ ।
ତୁମ୍ଭ ସଙ୍ଗ କରି ଏଣୁ ବନ୍ଧୁତା ସ୍ଥାପନ,
ଭାବ ଅଛି କରିବାକୁ ସ୍ୱଦେଶ ଗମନ ।
ଆଉ ମଧ୍ୟ ଅଛି ଅନ୍ୟ ଏକ ଅନୁରୋଧ,
ତା' ହେଲେ ତୁଟିବ ସବୁ ପ୍ରକାର ବିରୋଧ ।

ଶୁଣିଅଛୁ ପଦ୍ମିନୀଙ୍କ ଲୋକୋତ୍ତର କଥା,
ରୂପେ ଅତି ରୂପବତୀ ଗୁଣବତୀ ତଥା ।
ଭାଗ୍ୟ ବିନା ରୂପଗୁଣ ନୁହଇ ସମ୍ଭବ,
ରୂପର ଯେ ଅଧିକାଂଶ ଗୁଣେ ହୀନପ୍ରଭ ।
ପ୍ରକୃତି କରଇ ଏହି ଗତି ସମର୍ଥନ,
କଦାଚିତ ଘଟେ ଏହି ବେନିଙ୍କ ମିଳନ ।
ଏଣୁ ମୋ କାମନା ଥରେ ପଦ୍ମିନୀଙ୍କି ଦେଖି,
ସେ ମୂର୍ତ୍ତିଙ୍କ ପୂଜୁଥାନ୍ତି ହୃଦ ପଟେ ଲେଖି ।
ଶୋଭା ସହ ଗୁଣରାଶି ଯହିଁ ସମ୍ମିଳିତ
ଦେବତା ସମାନ ତାର ଲଭ ସୁନିଶ୍ଚିତ ।"
ପତ୍ର ସମାପନେ ତାକୁ କରି ସୁଯତନ
ଦୂତେ ଦେଇ କଲା ରାଣା ନିକଟେ ପ୍ରେରଣ ।
ଶୀଘ୍ର ବୈଜୟନ୍ତୀ ଧରି ତହୁଁ ଦୂତବର,
ଅଶ୍ୱ ଆରୋହଣେ ଗଲା ଚିତୋର ନଗର ।
ପ୍ରହସି ଗ୍ରହିଲା ପଥ ସନ୍ଦେଶ ବାହକେ
ଦୂତ ଉପଗତ ହେଲା ରାଣାଙ୍କ ସମକ୍ଷେ ।
ବିନୟ ବିନମ୍ର ହୋଇ ଦେଖାଇ ସମ୍ମାନ,
ଯୁକ୍ତ କରେ ଭକ୍ତିଭରେ ପତ୍ର କଲା ଦାନ ।
ଅଭିମୁଖୀ କରି ତହୁଁ ମହାରାଣା ପ୍ରତି,
ତଦବସ୍ଥ ହୋଇ କଲା ପାଶ୍ଚାତକୁ ଗତି,
ରାଣାଙ୍କ ଆଦେଶେ ଦୂରେ କରି ଉପବେଶ
ନେବାକୁ ରହିଲା ଗ୍ରହିଁ ତା ପ୍ରତି ସନ୍ଦେଶ ।
ପତ୍ର ପଢ଼ି ରାଣା ହେଲେ ମନରେ ବିସ୍ମିତ
ଭାବିଲେ ବିରୁଦ୍ଧ ପୁଣି ହୋଇଛି କଳ୍ପିତ ।
ଏ ବିଷୟ ପରାମର୍ଶ କରି କାକା ସହ,
ତା'ପରେ କରିବା ଭଲ ପତ୍ର ବିନିମୟ ।
ବିଶ୍ରାମ ନେବାକୁ କହି ଦୂତେ ମିଷ୍ଟ ଭାଷେ
ତହୁଁ ଚାଲିଗଲେ ରାଣା ପିତୃବ୍ୟ ନିବାସେ ।

ଅସମୟେ ଲକ୍ଷ୍ମଣଙ୍କୁ କରି ବିଲୋକନ,
ବିଶେଷ ଚଞ୍ଚଳ ହେଲା ଭୀମସିଂହ ମନ ।
କି ସମ୍ବାଦ ବାବା ବୋଲି ପଚାରନ୍ତେ ବୀର,
ଲକ୍ଷ୍ମଣଙ୍କ ମୁଖ ହୋଇ ଆସିଲା ଗମ୍ଭୀର
ପିତୃବ୍ୟଙ୍କ କରେ ଦେଇ ସମ୍ରାଟ ପତର
ବୋଇଲେ 'କର୍ତ୍ତବ୍ୟ ସ୍ଥିର କରନ୍ତୁ ସତ୍ୱର' ।
ପତ୍ରପାଠେ ଭୀମ ସିଂହ ହେଲେ ଆଚମ୍ବିତ
ବୋଇଲେ 'ପଦ୍ମିନୀ ଲୋଭେ ହୋଇ ଯେ ମୋହିତ,
ଆସିଅଛି ଏତେ ଦୂର ପ୍ରକାଶି ବିକ୍ରମ
ନେବାପାଇଁ ପଦ୍ମିନୀକି ବସିଛି ଅଧମ ।
ଏବେ ପୁଣି ହୃଦେ ତାର କରି କି ବିଚାର
ଆମାଗୁର ସହ ଦେଖା ପଠାଇଛି ଭାର ।
ବନ୍ଧୁ ଭାବେ ପୁଣି କରିଅଛି ଅନୁରୋଧ
ପଦ୍ମିନୀ ରୂପକୁ ଦେଖି ପାଇବ ପ୍ରବୋଧ ।
ସନ୍ତୋଷ ନ ଲଭେ ଜଳ ଦେଖି ତୃଷାତୁର,
ବରଞ୍ଚ ପିପାସା ତାର ବଢ଼ଇ ପ୍ରଚୁର ।
ଲଘୁତା ଆଣିବା ପାଇଁ ମନରେ ଆମ୍ଭର
କେତେ ମତେ ବର୍ଣ୍ଣିଅଛି ପ୍ରଶଂସା-ସମ୍ବର (୧) ।
ପ୍ରଥମେ ସେ କରି ଘୋର କପଟ ରଚନ
ସନ୍ଧୀକ ଦିଲ୍ଲୀ କି ମୋତେ କଲା ନିମନ୍ତ୍ରଣ ।
ନ ଯିବାରୁ ଦେଖାଇଲା ରୋଷେ ରଣରଙ୍ଗ
ଧରି ବହୁ ଅନୀକିନୀ (୨) ମାତଙ୍ଗ ତୁରଙ୍ଗ ।
ପଦ୍ମିନୀ କି ଛାଡ଼ିଦେଲେ ନ କରିବ ରଣ-
ବୋଲି ତହୁଁ କରିଥିଲା ସମ୍ବାଦ ପ୍ରେରଣ ।
ନୋହି ପାରିବାରୁ ସେହି କାମନା ସଫଳ,
ଏବେ ପୁଣି କରୁଅଛି ବନ୍ଧୁତାର ଛଳ ।

---

(୧) ସମ୍ବର—ଜଳ (୨) ଅନୀକିନୀ—ସୈନ୍ୟଦଳ

ନୁହଇ ବାନ୍ଧବ ଯୋଗ୍ୟ କେବେ ସେ ଦୁର୍ମ୍ମତି
ପରଦାର ଅନୁରକ୍ତ ସତତ ତା'ମତି ।
ପିତୃନାଶ ଭ୍ରାତୃନାଶ ଯେ ପାରଇ କରି
ତା'ଠାରେ ରଖିବା ଆମ୍ଭେ ବିଶ୍ୱାସ କପରି ?
ସମ୍ପ୍ରତି ସେ ଶତ୍ରୁ ରୂପେ ଏଥି ସମାଗତ
ବନ୍ଧୁତା କରିବା ନୁହେଁ ତା ସଙ୍ଗେ ସଙ୍ଗତ ।
ନାନା ଛଳ କଉଶଳ ଜାଣଇ ଯବନ
ନିରନ୍ତର ମନ ତା'ର ପାପେ ନିମଗନ ।
ଯେ ରହିବ ହୋଇ ତାର ଚିର ଅନୁଗତ,
ନିର୍ବିକଲ୍ପେ ପାଳୁଥିବ ତା ଆଜ୍ଞା ସତତ,
ସର୍ବସ୍ୱ କରିବ ତାର କରେ ସମର୍ପଣ,
ନିଜସ୍ୱ ନ ଥିବ କିଛି ବୋଲିବାକୁ ଅନ୍ୟ,
ଅଖଣ୍ଡ ପ୍ରଭୁତ୍ୱ ତାର କରିବ ସ୍ୱୀକାର,
ସନ୍ତୋଷିବ ମନ ପୁଣି ହୋଇ ନିର୍ବିକାର,
ଏପରି ଭୂଷଣେ ଯେହୁ ଥିବ ପରିପୂର୍ଣ୍ଣ
ଆଲ୍ଲା ସହ ମିତ୍ର ପଣେ ସେ ହେବ ନିପୁଣ ।
ପ୍ରକୃତିର ବହିର୍ଭୂତ ଆମ୍ଭ ଏ ସକଳ
ସମ୍ଭବିବ ନାହିଁ ଏଣୁ ଏଥିରୁ ମଙ୍ଗଳ ।
ଏବେ କାଳ ସ୍ରୋତ ଭିନ୍ନ ମୁଖେ ପ୍ରବାହିତ
ତାକୁ ଅନୁସରି ଚାଲୁ ଚଳିବା ବିହିତ ।
ଦେଶ-କାଳ-ପାତ୍ର ବୁଝି ବୁଦ୍ଧିବନ୍ତ ଜନ
ଆପଣା କର୍ତ୍ତବ୍ୟ କରିଥାନ୍ତି ନିରୂପଣ ।
ଏ ବିଷୟେ ଦୂରଦରଶିତା ନାହିଁ ଯା'ର
ଅନିଷ୍ଟ ଆଣଇ ଡ଼ାକି ଆପେ ଆପଣାର ।
ଗୁର୍ଜ୍ଜର ସମରେ ଲଭ ହୋଇଅଛୁ ଜୟ
ପରନ୍ତୁ ବିସ୍ତର ହୋଇଅଛି ବଳକ୍ଷୟ ।
ନ କରି ସଞ୍ଚୟ ଶକ୍ତି ପୁଣି କଲେ ରଣ
ଆମ୍ଭର ବାସନା ହୋଇଯିବ ଅକାରଣ ।

ଭାବନ୍ତି, ଏଣିକି ରଚି ଏକ ସୁମହାନ-
ପତିତ ଭାରତ କ୍ଷାତ୍ର ଶକ୍ତି ପ୍ରତିଷ୍ଠାନ,
ସକଳ ନରେଶ କରାଇବ ଏକତ୍ରିତ
ସାମ୍ୟ ମୈତ୍ରୀ ମନ୍ତ୍ରେ ପୁଣି କରିବ ମନ୍ତ୍ରିତ ।
କୁଳମାନ ଗୌରବର ଉନ୍ନତି ସାଧନ
କରିବେ ସରବେ ହୋଇ ଏକ ପ୍ରାଣମନ ।
ପରସ୍ପର ପ୍ରତି ସଦା ସଦ-ବ୍ୟବହାର-
କରିବାରେ ଦୋଷ ଦୃଷ୍ଟ ନ ହେବ କାହାର ।
ମୁଖ୍ୟ ଧର୍ମ ହେବ ତାଙ୍କ ପରଜାରଞ୍ଜନ,
ମୁଖ୍ୟ ଧର୍ମ ହେବ ପ୍ରଜା ଦୁରିତ ଭଞ୍ଜନ,
ପ୍ରଜା ଉନ୍ନତିକି ମଣି ଆପଣା ଉନ୍ନତି,
ରାଜାମାନେ କରୁଥିବେ ସେ ପଥରେ ଗତି,
କରିବେ ପରଜା ହିତ ଜୀବନର ବ୍ରତ,
କାର୍ଯ୍ୟ କରୁଥିବେ ନେଇ ପରଜାଙ୍କ ମତ ।
ଧର୍ମ ମାର୍ଗେ କରୁଥିବେ ସ୍ୱରାଜ୍ୟ ଶାସନ,
ପ୍ରଜା ନିର୍ବିଶେଷେ ପ୍ରଜା କରିବେ ପାଳନ,
ନ ଭାବିବେ ପ୍ରଜାଠାରୁ ନିଜକୁ ସ୍ୱତନ୍ତ୍ର
ରାଜଦଣ୍ଡ ଥିବ ଶୀତ-କାଳ ରୌଦ୍ର ବତ ।
ଭାରତରେ ଗଢ଼ି ନବ ଜାତୀୟ ଜୀବନ,
ଭାରତ ବାସୀଙ୍କି ଦେଇ ନବ ଜାଗରଣ,
ଜନତାବସାଦ କରି ଚିର ବିଦୂରିତ,
ସୋଦର ବିରୋଧ କରି ଚିର ନିର୍ବାସିତ,
ପରିହରି ନିଜ କୁଳ ମାନ ଭେଦ ଜ୍ଞାନ,
ସର୍ବେ ବୋଲାଇବେ ଏକ ଭାରତ ସନ୍ତାନ ।
ଭାରତର ସୁଖେ ଦୁଃଖେ ଯେହୁ ସମ ପ୍ରାଣ
ଏକ ମାତ୍ର ଧ୍ୟାନ ଯା'ର ଭାରତ କଲ୍ୟାଣ,
ଭାରତୀୟ ଜନେ ଥାଏ ଭ୍ରାତା ଜ୍ଞାନ କରି
ଭାରତ ବିଦ୍ୱେଷୀ ଜନେ ମଣେ ଶତ୍ରୁ ପରି,

ହେଉ ସେ ସ୍ୱଦେଶଭାଷୀ ଏ ଦେଶ ପ୍ରବାସୀ
ହୋଇଥାଉ ଅବା ଭିନ୍ନ ଈଶ୍ୱର ବିଶ୍ୱାସୀ
ଭ୍ରାତୃ ପ୍ରେମେ କରି ତାକୁ ଗାଢ଼ ଆଲିଙ୍ଗନ
ଭାରତ ଉନ୍ନତି-ଭିତ୍ତି କରିବା ସ୍ଥାପନ ।
ରାଜା ପ୍ରଜା ଏକତାର ଅଚ୍ଛେଦ୍ୟ ବନ୍ଧନେ
ବଦ୍ଧ ହୋଇଥିବେ ସଦା କାୟବାକ୍ୟ ମନେ ।
ଭାରତେ ଯେପରି ହୋଇ ଧର୍ମ ଅଭ୍ୟୁଦୟ
ବହୁକାଳାର୍ଜିତ ପାପ କରିଦେବ କ୍ଷୟ ।
ଭାରତ ସନ୍ତାନ ହୋଇ ଧର୍ମେ ବଳୀୟାନ
ନ ଭୁଞ୍ଜିବେ ଧର୍ମ କାର୍ଯ୍ୟେ ଦେବାକୁ ପରାଣ
ବିପଦ ସମୟେ କରି ଅନ୍ୟୋନ୍ୟେ ସାହାଯ୍ୟ
ଉଦ୍ଧରିବେ ଧର୍ମବଳେ ଭାରତ ସାମ୍ରାଜ୍ୟ ।
ଏ ବିଷୟେ ସାଧନରେ ଆତ୍ମ ସମର୍ପଣ
କରିବି ମୁଁ ଧରି ଧର୍ମ-ପ୍ରାଣ ଭୂପଗଣ ।
ମୋର ସେହି ଇଚ୍ଛା କାର୍ଯ୍ୟେ ପରିଣତ କାଳେ,
ନିର୍ମମ ବିଧାତା ଥାଇ ଚକ୍ଷୁରନ୍ତରାଳେ,
କି ଗୂଢ଼ ଉଦ୍ଦେଶ୍ୟ ସିଦ୍ଧ କରିବାର ପାଇଁ,
ଆଲ୍ଲାଉଦ୍ଦୀନଙ୍କୁ ଦେଲ ଏଠାକୁ ପଠାଇ ।
ଏଣୁ ମୁହିଁ ବିସ୍ମରିଇଁ ମନେ ଆପାତତଃ
ଯବନର ପ୍ରସ୍ତାବରେ ଦେବା ପାଇଁ ମତ ।
ଜାଣୁ ଜାଣୁ ଭବିଷ୍ୟତ ପ୍ରତି ଦେଇ ଦୃଷ୍ଟି
ତା'ବାକ୍ୟେ ସମ୍ମତ ହେଲେ ଅଛି କିବା ତ୍ରୁଟି ?
ଆଲ୍ଲାର ଉଦ୍ଦେଶ୍ୟ ଥିଲା ପ୍ରଥମେ ଦୂଷିତ
କେତେକାଂଶ ଏବେ ହୋଇଅଛି ସଂଶୋଧିତ ।
ପଦ୍ମିନୀ ପ୍ରାପ୍ତିର ଆଶା ହେବାରୁ ବିଲୀନ,
ପରିଶେଷେ ହୋଇ ମୂଢ଼ ଉପାୟ ବିହୀନ,
ବନ୍ଧୁତାର ବ୍ୟାଜ କରି କରିଛି କାମନା ।
ତା' ରୂପର ଦରଶନ ସେହି ମାତ୍ରମନା ।

ବନ୍ଧୁତା ବିରୋଧୀ ଆଜ୍ଞା ବ୍ୟବହାର ଚୟ
ଦେଖି ମନେ ସ୍ୱଭାବତଃ ଉପୁଜେ ସଂଶୟ ।
ତଥାପି ସେ ଦିଲ୍ଲୀ ଫେରି ଯିବାକୁ ପ୍ରସ୍ତୁତ-
ଥିବାରୁ, ଇଚ୍ଛାରେ ତାର ଅଛି ମୁଁ ସ୍ୱୀକୃତ ।
ଆଜ୍ଞା ଗଲେ ଦିଲ୍ଲୀ ଯାହା ମିଳିବ ସମୟ
ଅଭୀଷ୍ଟ ସାଧନେ ତାହା କରିଯିବ ବ୍ୟୟ ।
ଏଣୁ ତାକୁ ଯଥା ଶୀଘ୍ର କରି ସନ୍ତର୍ପିତ
ରାଜଧାନୀ ଦିଲ୍ଲୀ କି’ ତା’ପ୍ରେରଣେ ବିହିତ ।
ଏଥିରେ କି ମତ ଦେବେ ବୃଦ୍ଧ ମନ୍ତ୍ରିଗଣ
ପଚାରି ଦେଖିବା ଥରେ ତାଙ୍କୁ ପ୍ରୟୋଜନ ।
ବିପଦ ସମସ୍ୟା ଯେବେ ହୁଏ ଉପଗତ
ଚଳିବା ବିହିତ ମାନି ପ୍ରାଚୀନଙ୍କ ମତ ।
ତହୁଁ ମନ୍ତ୍ରୀ ସଭାସଦ ହେଲେ ସମ୍ମିଳିତ
ପତ୍ରୋକ୍ତ ବିଷୟ ହେଲା ପୁନରାଲୋଚିତ ।
କିଛି କ୍ଷଣ ଲାଗିଗଲା ବାଦ ଅନୁବାଦ,
କକ୍ଷ କମ୍ପାଇଲେ କେତେ କରି ଉଚ୍ଚନାଦ ।
କେତେ ଅବସରେ କରି କର ବିତାଡ଼ନ
ନିଜ କଥା ନିଜେ କରୁଥିଲେ ସମର୍ଥନ ।
ହସ୍ତପଦ ସଞ୍ଚାଳନେ ତର୍ଜନୀ ତର୍ଜନେ
ନୃତ୍ୟ ଆରମ୍ଭିଲେ କେତେ ଅଯଥା ଗର୍ଜନେ ।
କେତେ ଅବା ଥିଲେ ତହିଁ ଗମ୍ଭୀରତା ବହି
ସମୟେ ସମୟେ ପଦେ ପଦେ କଥା କହି ।
ସିଦ୍ଧାର୍ଥ ନାମରେ ଥିଲେ ବୃଦ୍ଧ ମନ୍ତ୍ରୀ ଜଣେ,
ତାଙ୍କ ମତ ପଚାରିଲେ ତହୁଁ ସଭାଜନେ ।
ସେ ବୋଇଲେ ଭାବି ଭୂତ ବର୍ତ୍ତମାନ ଗୃହିଁ
କାର୍ଯ୍ୟ କରିଥାଏ ଲୋକ ବୁଦ୍ଧି ଅନୁଯାୟୀ ।
ବିବେକ ବିଚାର ସବୁ ବୁଦ୍ଧିବଳେ ଜାତ,
ବୁଦ୍ଧିରୁ ହୁଅଇ ଲୋକ ଋଦ୍ଧି ବୃଦ୍ଧିପ୍ରାପ୍ତ ।

ଏଣୁ ବୁଦ୍ଧି ଅନୁସର କର୍ତ୍ତବ୍ୟ କରମ,
କରିବାର ସବୁବେଳେ ଅଟଇ ଧରମ ।
ମୋ ବସ୍ତୁରେ ବାଞ୍ଛିତ କାମନା ପୂରନ୍ତ-
କରିବାରେ ନାହିଁ କିଛି ଆପତ୍ତି ସମ୍ପ୍ରତି ।
ଇଚ୍ଛା କରି ଆମ୍ଭଠାରେ ଶତ୍ରୁତାଚରଣ-
କରିଥିଲ, ଏବେ ଲୋଡୁଅଛ ବନ୍ଧୁପଣ ।
ଦୁର୍ଗଜୟ କରିବାର ହେବାରୁ ଅସାଧ,
ଆମ୍ଭ ସଙ୍ଗେ ମିଶିବାକୁ ହୋଇଅଛ ବାଧ ।
ଔଦ୍ଧତ୍ୟ ବର୍ଜିତ ନମ୍ର ବିନୟ ବଚନେ,
ଅନୁରୋଧ ଜଣାଉଛ କାମନା ପୂରଣେ ।
ନୁହଇ ତା' ଇଚ୍ଛା ଏବେ ସମ୍ମାନ-ନାଶିନୀ
ଦେଖି ହେଲେ ଥରେ ଆସି ଏଠାକୁ ପଦ୍ମିନୀ,
କୁଳବଧୂ-କୁଳଯେନ ପଦ୍ମିନୀ ଗହଣେ,
ଯିବେ କିଛି ଦୂର ମୁକ୍ତ- ଶିବିକାରୋହଣେ,
ସେତେବେଳେ ତାଙ୍କୁ ବାରେ ନୟନ ଗୋଚର,
କରିବ ସମ୍ରାଟ ପାଇ ଶୁଭ ଅବସର ।
ଏଥିରେ ନ ହେବ କାହା ସମ୍ମାନ ଖରବ
କିମ୍ବା ହାନି ହେବ ନାହିଁ ଆମ୍ଭ ଗୌରବ ।
ଜଣେ ଯାହା କରିଥାଏ କଷ୍ଟେ ସମ୍ପାଦନ
ବହୁଜନ ଦ୍ୱାରା ହୁଏ ସହଜେ ସାଧନ ।
ଏକ ପକ୍ଷେ ଦୂଷଣୀୟ ଯେଉଁ ଆଚରଣ
କ୍ଷମଣୀୟ ଆଚରିଲେ ତାହା ବହୁଜନ ।
ଘର୍ଷ·ଦୁର୍ଗ-ଅବରୋଧେ ଦୁର୍ଗ ବାସୀଗଣ,
ଘର୍ଷ କଷ୍ଟେ କରୁଛନ୍ତି କାଳ କରତନ ।
ଯେ ଉପାୟେ ସହଜରେ ଦୁଃଖ ହେବ ଦୂର
ତାକୁ ଅନୁସରିଥାନ୍ତୁ ସହଜ * ଚତୁର ।'

---

* ସହଜ—ସ୍ୱଭାବତଃ

ବୃଦ୍ଧ ମନ୍ତ୍ରୀ ବାଣୀ ଶୁଣି ସର୍ବ ସଭାସଦ
ଏକମତ ହେଲେ ତହିଁ ହୋଇ ଗଦଗଦ ।
କିନ୍ତୁ ଭୀମ ସିଂହ ହେଲେ ଇଷତ ଭାବିତ
ସିଦ୍ଧାର୍ଥ ବଚନେ କଲେ ଆପତ୍ତି କିଞ୍ଚିତ ।
ବୋଇଲେ 'ଦର୍ପଣ ବିମ୍ବେ ଗୃହେ ପ୍ରଦର୍ଶନ
ପଦ୍ମିନୀଙ୍କି କଲେ ଅଛି, କି କ୍ଷତ କାରଣ ?
ସମସ୍ତେରେ ହୋଇ ସର୍ବେ ହର୍ଷ ପରିପୂର୍ଣ,
ଭୀମଙ୍କ ପ୍ରସ୍ତାବ କଲେ ସାଦରେ ଗ୍ରହଣ ।
ଯଥା ଯୋଗ୍ୟ ମାନ୍ୟ ପରେ ଉଚିତ ଉତ୍ତର-
ଲେଖାଗଲା କରି ମହାରାଣାଙ୍କ ସ୍ୱାକ୍ଷର ।
ଦୂତ ପାଇ ପତ୍ର ନେଲା ତହିଁରୁ ବିଦାୟ
ମିଳିଲା ନିକଟେ ଯହିଁ ଥିଲା ବାଦଶାହ ।
ବସିଥିଲା ଆଖି କରି ପ୍ରତୀକ୍ଷା ଦୂତର
ଦେଖିଲା ସେ ଆଣିଅଛି ରାଣାଙ୍କ ଉତ୍ତର ।
ପଢ଼ିଲା ନିବିଷ୍ଟ ମନେ ବସି ନିରଜନେ,
ଆହ୍ଲାଦେ ଅଧୀର ହୋଇ ଉଠିଲା ତତ୍‌କ୍ଷଣେ ।
ଭାବିଲା ରୂପସୀ ହେଲେ ନେତ୍ର-ପଥଗତ
ଧମପୂରେ କରିନେବ ତାକୁ କରଗତ ।
ଦେଖିଲେ ସେ ମୋ ସ୍ୱରୂପ ଅତୁଳ ବିଭବ
ନ ହେବ କି ମନେ ତାର ମନୋଜ ସମ୍ଭବ ।
ସୁବେଶ ପୁରୁଷ ଦେଖି ସହଜେ କାମିନୀ
ଲଜ୍ଜା ତେଜି ହୋଇଥାନ୍ତି ତା' ଅନୁରାଗିଣୀ ।
ପଦ୍ମିନୀ ଚାହିଁଲେ ମୋର ରତ୍ନମୟ ବେଶ,
ଆଉ କି ପଡ଼ିବ ତାର ନୟନେ ନିମେଷ
ଏହି ରୂପେ ଆଖି ହୋଇ ଆହ୍ଲାଦିତ ଅତି
ପଦ୍ମିନୀ ପ୍ରାପ୍ତିର ଆଶା କଲା ବଳବତୀ ।

□

# ସପ୍ତମ ସର୍ଗ

ରଜନୀର ତମୋମୟ ଦୁର୍ଗ କରି ଜୟ
ଲୁଟି ତାର କୋଷୁଁ ତାରାରତନ ନିଚୟ,
ଆଲୋକ ଦହନେ ଦହି ତାର ନିକେତନ,
ଅଳି ମୁଖେ ଜୟଶଙ୍ଖ ଫୁଙ୍କି ଘନ ଘନ,
ଦର୍ପଭରେ ଦୁର୍ଗଶିରେ କରି ପଦାଘାତ,
ଉଡ଼ାଇ ଅରୁଣ ବାନା ଆସିଲା ପ୍ରଭାତ ।
ବିଜୟୀ ସୈନିକ ରୂପେ ବିହଙ୍ଗମ ଦଳ
ଜୟ ରବେ ପୂର୍ଣ୍ଣ କଲେ ଗଗନ ମଣ୍ଡଳ,
ବିଷମ ବିପଦ ଆଗେ ହେବାରୁ ଆଗତ
ପଳାଇଲା ରାଜ୍ୟ ଛାଡ଼ି ରାତ୍ରି ହୋଇ ତ୍ରସ୍ତ ।
ରଜନୀଙ୍କ ସହିଁ ପଳାୟନ ପରାୟଣ
ସହଚର ଗଣ କଲେ ତା ଅନୁସରଣ ।
ବଳେ କାଢ଼ି ନେଇ ନିଶା ସୁନୀଳ ବସନ
କଳିଙ୍ଗ-କୋକିଳ-କାକ କଲେ ତା' ଧାରଣ ।
ନିଶା ଦୁର୍ଦ୍ଦଶାରେ ପ୍ରାଣେ ଭରି ଅନୁତାପ
କପୋତ ସକଳ କଲେ କରୁଣ ବିଳାପ ।
ପ୍ରଭାତର ଦେଖି ଶୁଭମୟ ଆଗମନ
ଆନନ୍ଦେ ହସିଲା କୁନ୍ଦ ବିକାଶି ରଦନ ।
ସୁରଭି କୁସୁମପୁଞ୍ଜ ସଜାଡ଼ି ଯତନେ
ଛନ୍ଦ ଧରି ଉଭାହେଲା ମାଧବୀ ଗହନେ
ସୁନାରି ସୁନାସି ଧରି ଦିବ୍ୟ ସ୍ୱର୍ଣ୍ଣହାର
ପ୍ରଭାତ ରାଜାଙ୍କୁ ଦେଲା ପ୍ରୀତି ଉପହାର ।
ଲୋହିତ ଅଧରା ଜବା ମନ୍ଦେ ମନ୍ଦେ ହସି
ଚରଣକଙ୍କଣ ପ୍ରାନ୍ତେ ଜବେ ଗଲା ବସି ।

ବକୁଳ ପାଦପ କରି କୁସୁମ ବର୍ଷଣ
ଅଭିଷେକ କିମ୍ବା କଲା ସମ୍ବର୍ଦ୍ଧ ସାଧନ ।
ମାଳତୀ ସୁରମ୍ୟ ବେଳଶ ସାଜ ଅପଘନ
ବନ୍ଦାପନା କଲା ହୋଇ ସଲଜ୍ଜ ବଦନ ।
କୁସୁମିତ ଆମ୍ରତରୁ ଭ୍ରମର ଗୁଞ୍ଜନ-
କରି, କଲା ପ୍ରଭାତର ଗୌରବ ବର୍ଦ୍ଧନ ।
ଗାଇଲା-ପ୍ରଭାତ-ସ୍ତବ କୋକିଳ ବିପୁଳ
ଝଂଛନାଦେ ତୂରୀ ବଜାଇଲେ ଶିଖିକୁଳ ।
କେତକୀ ମତ୍ତ କି କରି ପୂର୍ଣ୍ଣ ହର୍ଷଭରେ
ସୁତୀକ୍ଷ୍ଣ ଖଡ୍ଗ ନେଇ ଭେଟିଲା ଶ୍ରୀକରେ ।
ବନ୍ଦିନୀ ପଦ୍ମିନୀ ହୋଇ ବନ୍ଧନ ମୁକତ
ହୃଦ କୃତଜ୍ଞତା କଲା ପ୍ରଭାତେ ବ୍ୟକତ ।
ଏ କାଳେ ଶତୋରେ ବାଜି ପ୍ରାତଃ ନହବତ
ନଗର ବାସୀଙ୍କି କଲା ଯତନେ ଜାଗ୍ରତ ।
ଉଠି ପ୍ରାତଃକୃତ୍ୟ ସାରି ପୁରାଙ୍ଗନା ଗଣ
ଗତ ଦିବସର କଥା କଲେ ଆଲୋଚନ ।
କେ ବୋଇଲା-'ଏ କି ହେଲା ଆଗୋ ପ୍ରିୟ ସଖି
ଯବନ ପୀଡ଼ନ ଆଉ ହେବ ନାହିଁ ସହି ।
ପଦ୍ମିନୀ କି ନେବା ପାଇଁ ଆସିଥିଲା ଖଳ
ନେଇ ନ ପାରିଣ ବେଗେ ଦେଖାଇଲା ବଳ ।
ନୋହି ପାରିବାରୁ ପୁଣି ତହିଁ କୃତକାର୍ଯ୍ୟ
ରୂପ ତାଙ୍କ ଦେଖିବାକୁ ଚାହିଁଛି ଅନାର୍ଯ୍ୟ ।
ନୁହଇ ତ ଯବନର ମତିଗତି ଭଲ
ରୂପ ଦେଖି ହେବ ସିନା ତା'ପ୍ରାଣ ବିକଳ ।
ଖୋଜିବ ସେ ପୁଣି ତାଙ୍କୁ ପାଇବାର ପଥ
ନ ପାଇ'କି ହୋଇପାରେ କେବେ ସେ ନିରସ୍ତ ?
କି ବିଶ୍ୱାସେ ରାଣୀ ହେଲେ ତହିଁରେ ସମ୍ମତ
ଉପୁଜି ପାରଇ ଏଥିଁ ଭୀଷଣ ଅନର୍ଥ ।

ଯେତେ ପ୍ରିୟବାଣୀ ହେଉ ସ୍ୱଭାବ ଦୁର୍ଜନ
କେବେ କ'ଣ ହୋଇପାରେ ବିଶ୍ୱାସଭାଜନ ?
ଧନ ଧର୍ମ ଧର୍ଷଣାର୍ଥୀ ଯବନ ପ୍ରତାପେ,
ହେଉଛନ୍ତି କଳବଳ ଅନନ୍ତ ସନ୍ତାପେ ।
ପ୍ରତିକାର ପଥ କିଛି ନାହିଁ କି ଏ'ଥର
କେ ଜାଣିବ କ'ବା ଅଛି ଭାଗ୍ୟେ ଶତ୍ରୁର'ର ।'
ଅନ୍ୟ କେ ବୋଇଲ୍-'କେଲେ ସନ୍ଦେହ ଲଙ୍ଘନ,
ଇଷ୍ଟ ଲାଭ କରଥାନ୍ତି ସିନା ଜନ ଗଣ ।
ଭବିତବ୍ୟ ଗର୍ଭେ ସଦା ମହା ଅନ୍ଧକାର
ପଶିବାକୁ ତହିଁ ଅଛି କାହା ଅଧିକାର ?
ଯହିଁ ଯେତେବେଳେ ଯାହା ହୁଏ ସଙ୍ଘଟିତ
ଶୁଭ ଇଚ୍ଛା ବିଧାତା'ର ତହିଁରେ ନିହିତ ।'
ଏହିପରି କୁହାକୁହି ହୋଇ ନାଗରଣ,
ଭବିଷ୍ୟତ ଭାବନାରେ ହେଲେ ନିମଗନ ।
କାକ ଡାକେ ଉଠି ଆଲ୍ଲାଉଦ୍ଦୀନ ଚଞ୍ଚଳ,
ସ୍ନାନବିଧି ସାରି ହୋଇ ଆନନ୍ଦ ବିହ୍ୱଳ
ରୁଚିର ଉଜ୍ଜ୍ୱଳ ପଟ୍ଟ ବସ୍ତ୍ର ପରିଧାନ-
କରି ଲଗାଇଲା ଅଙ୍ଗେ ଦ୍ରବ୍ୟ ଅଙ୍ଗହାଣ,
ରତ୍ନମୟ ବେଶେ ହୋଇ ଯତନେ ମଣ୍ଡିତ,
ସର୍ବାଙ୍ଗ ଅତର ବାସେ କଲା ସୁବାସିତ ।
ମହାମୂଲ୍ୟ ମହୋଜ୍ଜ୍ୱଳ ମଣି ବିଖଚିତ,
ସୁବର୍ଣ୍ଣ କିରୀଟେ କରି ମସ୍ତକ ମଣ୍ଡିତ ।
କଟିତଟେ ସାରସନେ କଲା ଶୋଭମାନ
ହସ୍ତରେ ଧଇଲା ସ୍ୱର୍ଣ୍ଣ ମୁଷ୍ଟିକ କୃପାଣ ।
ସ୍ୱର୍ଣ୍ଣଜରି ବିଜଡ଼ିତ ଶୁଭ୍ର ଉପାନହ,
ପାଦେଲାଗି ପ୍ରକାଶିଲେ ଶୋଭା ଅତିଶୟ ।
ପଦ୍ମରାଗ ସୁରଚିତ ଏକ ଫେଣ୍ଟଫୁଲ
ଅନ୍ୟ ହସ୍ତେ ଧରି, ବେଶ କଲା ଅନୁକୂଳ ।

ସୁଶିକ୍ଷିତ ସୁବାକ୍ଷିତ ସୁବେଶ ଭୂଷିତ
ଗଜରାଜ ପୃଷ୍ଠେ ଚଢ଼ି ହେଲା ସୁଶୋଭିତ ।
ନାଗଏ ମଣ୍ଡିତ ହୋଇ ଦିବ୍ୟ ପରିଚ୍ଛଦେ
ବଜାଇଲେ ନାନା ବାଦ୍ୟ ବିଭିନ୍ନ ସବଦେ ।
କିଛି ଦୂର ଯାଇ ପୁଣି ସମ୍ରାଟ ସହିତ
ମଙ୍ଗଳେ ବିଦାୟ ଦେଇ ଫେରିଲେ ତୁରିତ ।
ଶରୀର ରକ୍ଷକ ରୂପେ ଅଳ୍ପ ଅନୀକିନୀ
ଆଲ୍ଲାଉଦ୍ଦୀନର ହେଲେ ପଶ୍ଚାତ୍ ଗାମିନୀ ।
ଚଳିଲେ ଚିତୋର ପଥେ ସଜଳେ ଆବେଶେ,
କିଛିକ୍ଷଣେ ସମାଗତ ହେଲେ ଦ୍ୱାର ଦେଶେ ।
ରାଣାଙ୍କ ଆଦେଶ ମତେ ଦେଖାଇ ସମ୍ମାନ
ଫାଟକ ଫିଟାଇ ଦେଲା ପ୍ରହରୀ ପ୍ରଧାନ ।
ଏହି ରୂପେ କ୍ରମେ ଯାଇ ନଗର ସମ୍ମୁଖେ
ଉପସ୍ଥିତ ହେଲା ଆଲ୍ଲା ପ୍ରୀତିପୂର୍ଣ୍ଣ ମୁଖେ ।
ରାଣା ଭୀମ ସିଂହ ଥିଲେ ତହିଁ ଉପଗତ
ଆଲିଙ୍ଗିଲେ ସମ୍ରାଟଙ୍କୁ ବଢ଼ାଇ ଶ୍ରୀ ହସ୍ତ ।
ପ୍ରତି ଆଲିଙ୍ଗନ ଦାନେ ସମ୍ରାଟ ତତ୍‌କ୍ଷଣ
ଭୀମ ସିଂହଙ୍କର କଲେ ମର୍ଯ୍ୟାଦା ରକ୍ଷଣ ।
କୁଶଳ ଜିଜ୍ଞାସା ତହୁଁ କରି ପରସ୍ପର
ଦେଲେ ହର୍ଷଭରେ ଯଥା ବିହିତ ଉତ୍ତର ।
ସମ୍ରାଟଙ୍କୁ ନେଇ ରାଣା ନଗର ଭିତର
ବସାଇଲେ ଦିବ୍ୟାସନେ କରି ସମାଦର ।
ବିବିଧ ଆଳାପ କଲେ ତହିଁ ବେନି ବସି
ବୈରଭାବବର୍ଜିତ ଏ'କି ରାହୁ ଆଉ ଶଶୀ ?
ଅବା ଯେହ୍ନେ ଭେଟହେଲେ ପାର୍ଥ ଦୁର୍ଯ୍ୟୋଧନ
ଶ୍ରୀ କୃଷ୍ଣଙ୍କୁ କରିଯିବା ସ୍ଥଳେ ନିମନ୍ତ୍ରଣ ।
ପରସ୍ପର କଥାସ୍ରୋତ ଚଳିଛି ପ୍ରବଳ
କିନ୍ତୁ ସମ୍ରାଟଙ୍କୁ ତାହା ଲାଗୁ ନାହିଁ ଭଲ ।

ଯେ ଯାଏ ସେ ଦେଖୁ ନାହିଁ ରୂପ ପଦ୍ମିନୀ'ର
ସେତେବେଳ ମନଟାର ହେଉଛି ଅସ୍ଥିର ।
କ୍ରମେ ମହା ବ୍ୟସ୍ତତାରେ ମଜ୍ଜିଲା ତା'ମନ
ବିଶୃଙ୍ଖଳ ବାକ୍ୟାବଳୀ ବକିଲା ବଚନ ।
ଏ ସମୟେ ଫିଟିଗଲା ସନ୍ମୁଖ କିଳଣୀ
ଭିତରେ ଦିଶିଲା ଏକ ଅପୂର୍ବ ରମଣୀ ।
ରୂପର ପ୍ରଭାରେ ଗୃହ ହେଲା ଦୀପ୍ତିମାନ
ଝଟକି ଉଠିଲେ ତହିଁ ଥିବା ବସ୍ତୁମାନ ।
ଶମ୍ପାସମ ତେଜ ତାର କରି ବିଲୋକନ
ସହସା ଝଲସିଗଲା ସମ୍ରାଟଲୋଚନ ।
ଦର୍ପଣରେ ହୋଇଅଛି ଯେ ପ୍ରତିଫଳିତ
ତା'ରୂପରେ ଆଲ୍ଲାମତ୍ତ ହେଲା ବିଚଳିତ ।
ବିରଳାବରଣୀ ହୋଇ ଶୋଭଇ ରୂପସୀ
ଏ ମୂର୍ତ୍ତି ଚଢ଼ିଲା ବନ୍ଧ ନେତ୍ରେ କାଳ ବଂଶୀ ।
ପଦ୍ମୋପରି ଇନ୍ଦୀବର ହେଲ ପ୍ରାୟେ ସ୍ଥିତ
ବଦନେ ନୟନ ଦେବେ ଦିଶନ୍ତି ଲଳିତ ।
ତହିଁ ପାଖେ ବସିଥିଲେ ସାଦୃଶ ଖଞ୍ଜନ
ଭ୍ରୂଲତା ସେପରି କରେ ମାନସ ରଞ୍ଜନ ।
ତିଳ ଫୁଲ ଜିଣି ଦିଶେ ନାସିକା ରୁଚିର
ମଦନର ଅଟେ ଏକ ଦ୍ୱିମୁଖ ତୂଣୀର ।
ଶ୍ରବଣ ଯୁଗଳ କେଶ ବେନିପ୍ରାନ୍ତେ ତା'ର
ଫୁଟିଛି କି ପୁଷ୍ପଦ୍ୱୟ ଅପରାଜିତାର ।
ସୁପକ୍ୱ ବିମ୍ବର ରୁଚି କରି ଆହରଣ
ଅଧର ଯୁଗଳ ଅ:ହା ଦିଶେ କି ଯତନ ।
ମାର୍ଜିତ ମୁକୁର ପରି ଶୋଭେ ଗଣ୍ଡସ୍ଥଳ
ସମୀର ପରଶେ ଯେହ୍ନେ ହେବ ସେ ସମଳ
ଉଜ୍ଜ୍ୱଳ ଲଲାଟପଟ କରେ ପ୍ରକଟନ
ଉଜ୍ଜ୍ୱଳ ଲଲାଟପଟ ଯାବତ ଲକ୍ଷଣ ।

ସୁଗଠିତ ଗ୍ରୀବାଦେଶ ମଞ୍ଜୁ କମ୍ବୁ ସମ,
ମନ କରେ ଆକର୍ଷଣ ଉତ୍ତମରୁ ମଧ୍ୟମ ।
ମୃଣାଳ ସଦୃଶ ଋଜୁ ଭୁଜ ଯୁଗ ଶୋଭେ
ଅନାଇ ଅଙ୍ଗୁ'କ ଉରୁ କରଭ ତା' ଲୋଭେ ।
ପଦଗୃହ୍ନିଁ ଯାବେକମା ହେବ ସୁଲକ୍ଷିତ
ମୋତି ତୁଲ୍ୟ ନଖାବଳୀ ତହିଁ ବିଜଡ଼ିତ ।
ଶରୀର କାନ୍ତିରୁ ବାସ ଦିଶଇ ମଳିନ,
ଅପଘନ ନବନୀତ ଜିଭ ଅକଠିନ ।
ସୁନ୍ଦରୀର ରୂପାମୃତ ନେତ୍ରେ କରି ପାନ
ଲୁପ୍ତ ହେଲା ସମ୍ରାଟର ବେଗେ ବାହ୍ୟ ଜ୍ଞାନ ।
ଭାବିଲେ ସେ ସ୍ୱର୍ଗପୁରେ ହୋଇ ଉପନୀତ,
ସମ୍ମୁଖେ ଦେଖୁଛି ଏହି ଅପରୂପ ଚିତ୍ର ।
କେଉଁ ଅପସରା ଏ'କ ଦେଲା ଦରଶନ
ଅଥବା ଏ ଶଚୀ ସୁରପତି-ପ୍ରାଣଧନ ।
ନିମାଳିତ ପ୍ରାଣେ ଏକ ଧ୍ୟାନେ ଏକ ମନେ
ନିରେଖଇ ସେ ନୃବର ଅତୃପ୍ତ ନୟନେ ।
ପଲକ ପଡ଼ିଲେ କାଳେ ଯିବ ସେ ପଳାଇ
ଏଣୁ ଅପଲକ ହୋଇ ରହିଛନ୍ତି ଅନାଇଁ ।
ଚାହୁଁ ଚାହୁଁ ମୂର୍ତ୍ତି ତହୁଁ ହେଲା ଅପସୃତ
ସଙ୍ଗେ ସଙ୍ଗେ ଦ୍ୱାର ରୁଦ୍ଧ ହୋଇଗଲା ଦ୍ରୁତ ।
ସେତେବେଳେ ସଞ୍ଚରି'ତା ପ୍ରକୃତ ଚେତନା
ମନେ ଉପୁଜାଇ ଦେଲା ବିଷମ ଯାତନା ।
ତହୁଁ ତାଙ୍କୁ ଚଉଦିଗ ଦିଶିଲା ଅନ୍ଧାର
ନ ଦିଶିଲା ଘର ଦ୍ୱାର ଅଥବା ପଦାର ।
ସ୍ଥିର ନୟନେ ବିଲୋଚନ କରି ବିଲୋକନ
ଅନ୍ୟମନ ଚାହିଁଲେ ତାହା ଦିଶଇ ଯେସନ ।
ଅବା ଗତେ ଦୀପାଲୋକେ ରହି ଅକସ୍ମାତ
ଯଥା ଦିଶେ ବାହାରକୁ ଗଲେ ଦୃଷ୍ଟିପାତ ।

ନେତ୍ରେ ଦୃଷ୍ଟ ହେଲା ତାର, ନୟନେ ସକଳ
ସେହି ଘର ସେହି ଦ୍ୱାର ଅଛି ଅବିକଳ ।
କିନ୍ତୁ ପ୍ରାଣ-ବିମୋହିନୀ ନାହିଁ ସେ ପ୍ରତିମା
ଘରକୁ ଉଜଳୁଥିଲା ଯା ରୂପ ଗରିମା
ମନେ କଲା ଇନ୍ଦ୍ରଜାଲ ଏ'କି ଅଦ୍ଭୁତ
ଜାଗ୍ରତ ସ୍ୱପନେ ଅବା ହେଲି ଅଭିଭୂତ ।
ମହା ସନ୍ତୋଷ'ର ବ୍ୟାଜ ଦେଖାଇ ଯବନ,
ମିଷ୍ଟାଳାପେ ପରିତୋଷି ଭୀମ ସିଂହ ମନ
କରିବାକୁ ନିଜ ଅଭିଷ୍ଟତା ପରିହାର
ବିନୟେ ଜଣାଇ ହେଲା ଶିବିରୁ ବାହାର ।
ସରଳହୃଦୟ ଭୀମ ସିଂହ ମହାମତି,
ଦୁର୍ଗ ପାଦ-ଦେଶ ଯାଏ ସଙ୍ଗେ କଲେ ଗତି ।
ଫାଟକ୍ ବାହାର ହୋଇ କରି ଆଲିଙ୍ଗନ
ରାଣା ଠାରୁ ଆଜ୍ଞା କଲା ବିଦାୟ ଗ୍ରହଣ ।
ଏ ସମୟେ ଅତର୍କିତେ ଏକ ସୈନ୍ୟଦଳ,
ବନ୍ଦୀ କଲେ ଭୀମ ସିଂହେ ଦେଖାଇ ସ୍ୱବଳ,
ଅପ୍ରସ୍ତୁତ ରାଣା ହୋଇ ସୈନିକ ବେଷ୍ଟିତ
ଯବନ ଶିବିରେ ଯାଇ ହେଲେ ଅବସ୍ଥିତ ।
ନଗରେ କରି ଦେଲା ଆଜ୍ଞା ଘୋଷଣା ପ୍ରଚୁର,
ପଦ୍ମିନୀ ପାଇଲେ ଭୀମ ଲଭିବେ ନିସ୍ତାର ।
ଦୁର୍ଗ ପାଦଦେଶେ ଥିଲେ ଅଳପ ପ୍ରହରୀ,
ନ ପାରିଲେ ଭୀମ ସିଂହେ କେହି ରକ୍ଷା କରି,
ଶତ୍ରୁର ଅଜ୍ଞାତ ହେଲା ତାଙ୍କ ସେହି କାର୍ଯ୍ୟ
ବିଧାତା ବିଧାନ ସିନା ଅଟେ ଅନିବାର୍ଯ୍ୟ ।
ପ୍ରହରୀଏ ଦୁର୍ଗେ ଆସି ବିଦ୍ୟୁତ ବେଗରେ
ଯାଇ ଉପସ୍ଥିତ ହେଲେ ଲକ୍ଷ୍ମଣ ଆଗରେ ।
ବସିଥିଲେ ସେହି ଘର ରାଜ ସଭାସ୍ଥଳେ
ସେ ବିଷୟ ନିବେଦିଲେ ଚରଣ କମଳେ ।

Digitized by srujanika@gmail.com

ଲକ୍ଷ୍ମଣ ସେ ବାର୍ତ୍ତା ଶୁଣି ହେଲେ ଚମକିତ
ଦୁଃଖେ ଶୋକେ କ୍ଷଣେ ହୋଇଗଲେ ନିମଜ୍ଜିତ ।
ସମସ୍ତ ବୀରଙ୍କୁ ତହୁଁ ଭାଷିଲେ ଏସନ
‘ସ୍ୱପଥେ ପଥିକ ସଦା ଦୁରାତ୍ମା ଯବନ ।
ଜଣାଗଲା ଏବେ ତାର ମିତ୍ରତା କି ରୂପ
କରୁଥିଲା ଆମ୍ଭ ପ୍ରତି ସିନା ସେ ସ୍ୱରୂପ ।
ବନ୍ଦୀକରି ଭୀମ ସିଂହେ ବୋଲୁଛି ପାମର
ପଦ୍ମିନୀ ପାଇଲେ ହେବ ମୁକତ ଭୀମ’ର ।
କେ ସହିବ ବହି ରକ୍ତ-ମାଂସର ଶରୀର
ଆଲ୍ଲାଉଦ୍ଦୀନର ଏହି ଦର୍ପମୟ ଗିର
ରମଣୀ ଉତ୍କୋଚ ଦାନେ କେବେ କି ଚିତୋର
ବହିବ ଅକଥନୀୟ ଏ କଳଙ୍କ ଘୋର ?
ବୀର ଜାତି ବୋଲି ଯେବେ କର ଅହଂକାର,
ଢାଲ ତଲବାର ଯେବେ ତୁମ୍ଭ ଅଳଙ୍କାର,
ଚିତୋରୀର ବଂଶଗତ ସମ୍ମାନରକ୍ଷଣ,
କରିବାକୁ ବଳୁଅଛି ଯେବେ ତୁମ୍ଭ ମନ,
ହେଉଅଛି ଯଦି ତୁମ୍ଭ ରକ୍ତ ତରଳିତ,
ଶତ୍ରୁ ଅତ୍ୟାଚାରେ ପୁଣି ପ୍ରାଣ ଆକୁଳିତ,
ଅକ୍ଷୟ ଅମର କୀର୍ତ୍ତି ମର୍ତ୍ତ୍ୟରେ ସ୍ଥାପନ-
କରିବାର ଶକ୍ତି ଯେବେ କରିଛ ଅର୍ଜନ,
ଯାଇ ବେଗେ ଘୋର ରଣେ ପଶି ଅକସ୍ମାତ
ଯବନର ବଳଦର୍ପ କର ଧୂଳିସାତ ।
ତହିଁ ସଙ୍ଗେ ଭୀମଙ୍କର ବନ୍ଧତ୍ୱ ମୋଚନ-
କରି, କର ଉତ୍ତୋଳନ ବିଜୟ କେତନ ।’
ଶୁଣି ବାକ୍ୟ ଉତ୍ତେଜିତ ହୋଇ ବୀରଗଣ,
ଉଠିଲେ ଗରଜି ଦର୍ପେ ବରଜି ଆସନ ।
ବୋଇଲେ ସକଳେ ‘ଶୁଣ ରଓ ମହାରଣ,
ଉଦ୍ଧାରିବା ଭୀମେ ଚେଷ୍ଟା କରି ଆମରଣ,

ନିଶ୍ଚୟ ଏ ବାକ୍ୟ କେବେ ନୋହିବ ଅନ୍ୟଥା
ଗଲେ ପଛେ ଯିବ,ରଣ-କ୍ଷେତ୍ରେ ଆମ୍ଭ ମଥା ।'
ତହୁଁ ଧାଇ ସର୍ବେ ହେଲେ ରଣାର୍ଥ ପ୍ରସ୍ତୁତ,
ପ୍ରଭାତରୁ ଅଭିଯାନ ହେଲା ସ୍ଥିରୀକୃତ ।
ବଜ୍ରପାତ ପରି ସେହି ଦାରୁଣ ସମ୍ବାଦ
ଚିତୋର ବାସୀଏ ଶୁଣି ଭଜିଲେ ପ୍ରମାଦ ।
ସ୍ଥାନେ ସ୍ଥାନେ ବସି ଜନେ ବୋଇଲେ କି ହେଲା,
ମରଣୁ ଅଧିକ ଲଜ୍ଜା ଆସି ଦେଖା ଦେଲା,
ସମ୍ପଦେ ବିପଦେ ଯେହୁ ଆମ୍ଭ ଅଗ୍ରେତ
ତାଙ୍କୁ ବନ୍ଦୀ କରିଅଛି ଯବନ ଦୁର୍ମତି ।
ବନ୍ଧୁତା ଦେଖାଇ କଲା କି ଘୋର ବଞ୍ଚନା
କି ରୂପେ ସହିବା ଏହି ଦୁଃସହ ଲାଞ୍ଛନା ।
ବିଶ୍ୱାସେ ମିଶାଇ ବିଷ ପାପିଷ୍ଠ ସମ୍ରାଟ
ଘଟାଇ ଦେଇଛି ଅହୋ ଭୀଷଣ ବିଭ୍ରାଟ ।
ଶତ ଧୌତ କଲେ ମଧ୍ୟ ହୁଏ କି ଅନ୍ତର
ଅଙ୍ଗାରର ମଳିନତା କିଞ୍ଚିତ ମାତର ?
ଆଶୀବିଷେ * କରାଇଲେ ମଧ୍ୟ ପୟଃପାନ
ବିଷ ଛଡ଼ା ମୁଖୁଁ ତାର ନ ବାହାରେ ଆନ !
ଶୁଣିଲେ ପଦ୍ମିନୀ ରାଣୀ ଏ ମନ୍ଦ ସନ୍ଦେଶ
କାନ୍ଦି କାନ୍ଦି ଜୀବନକୁ କରିଦେବେ ଶେଷ ।'
ମୃଗ ଜାଲେ ପଡ଼ି ଯଥା ବିମର୍ଷ କେଶରୀ
ଯବନ ଶିବିରେ ରାଣା ହେଲେ ସେହିପରି ।
ନ କହି କାହାକୁ କିଛି ହୋଇ ମୌନବ୍ରତ
ଦୀର୍ଘଶ୍ୱାସ ତେଜୁଥାନ୍ତି ସେ ଅନବରତ ।
ଶତ୍ରୁ ଠାରେ କରିସିନା ବିଶ୍ୱାସ ସ୍ଥାପନ
ଏ ଘୋର ବିପଦ ରାଣା କଲେ ନିମନ୍ତ୍ରଣ ।

---

* ଆଶୀବିଷ—ସର୍ପ

ଯବନର ଶଠତାରେ ହୋଇ ନିପତିତ
କି କଷ୍ଟରେ କରୁଛନ୍ତି ସମସ୍ତ ଅଜ୍ଞାତ ।
ପରମ ଧାର୍ମିକ ସ୍ୱାମୀ ଧର୍ମ ତାଙ୍କ ବଳ
ଏ ବିପଦୁ ଉଦ୍ଧରିବେ ତାଙ୍କୁ ସେ କେବଳ ।
ସେ ବେଗେ ସ୍ୱାମୀଙ୍କ ଶୁଣି ବିପଦ ବାରତା
ବିଷାଦେ ପଦ୍ମିନୀ ହେଲେ ମରମ-ଆହତା ।
କହିଲେ 'ହେ ହୃଦନାଥ ଏକା ମୋହ ପାଇଁ
ଏ ଘୋର ବିପଦ ଜାଲେ ପଡ଼ିଲେ ଯାଇ ।
ମୁହିଁ ତ ତୁମ୍ଭର ନାଥ ବିପଦ କାରଣ
କିପାଁ କରୁ ନାହିଁ ମୋତେ ମରଣ ବରଣ ।
ଧିକ୍ ଏ ରୂପକୁ ଏ'ତ ଅନର୍ଥ ଆକର,
ଏଥିଲାଗି ଲୋଭାକୃଷ୍ଟ ଯବନ ବର୍ବର
ନେଲ୍ ଦୁର୍ଗ ପାଦଦେଶ ମିଷ୍ଟାଳାପେ ଲୁବ୍ଧ,
ଶେଷେ କଲ୍ ଅସହାୟ ତୁମ୍ଭଙ୍କୁ ସେ ବନ୍ଦୀ ।
ବର୍ଜନୀୟ ହୋଇଥିଲେ ଏ ରୂପ ମୋହର
ବଞ୍ଚି ଥାଅନ୍ତ, ତେବେ ନ ହୋଇ କାତର ।
ବୃଥା ସିନା ତୁମ୍ଭ ବିନା ଜୀବନ ଯୌବନ
କାହାକୁ କରିବି ସେବା ଧର୍ମ ଅରଜନ ?
ତୁମ୍ଭେ ଅଟ ପ୍ରାଣନାଥ ମୋର ସର୍ବସାର
ଧନଜନ ତୀର୍ଥବ୍ରତ ସକଳ ସଂସାର ।
ବିବେକ ବଳର ବୁଦ୍ଧି ତୁମ୍ଭେ ମୋ ସକଳ,
ମାନସର ଅହଂକାର ହୃଦୟର ବଳ ।
ଯବନ ଘୋଷଣା ଶୁଣି କାନ୍ଦୁଛି ପରାଣ
ହୃଦେ ବସି ଦୟା ବନ୍ଧୁ କର ବୁଦ୍ଧିଦାନ ।
କି ରୂପେ ଫିଟିବ ତୁମ୍ଭ ମୁକତିର ପଥ
ସତୀତ୍ୱ ମୋହର ପୁଣି ଥିବ ଅବ୍ୟାହତ ।'
ଏ ରୂପେ ପଦ୍ମିନୀ କଲେ କରୁଣ-କ୍ରନ୍ଦନ,
ନୟନୁ ଆକୁଳେ ଝର ବହିଲ ସଘନ !

ତାଙ୍କୁ ସେ ମାରିବ ହୋଇ ସଖୀ ପ୍ରବୋଧନେ
ମନ୍ତ ଦେଲେ ପତି-ମୁକ୍ତି-ଉପାୟ ଚିନ୍ତନେ ।



## ଅଷ୍ଟମ ସର୍ଗ

ଜଗତ ନୟନ ରବି ହେଲେ ଅସ୍ତଗତ
ସନ୍ଧ୍ୟା ଆସି ବିସ୍ତାରିଲା ନିଜ ଆଧିପତ୍ୟ ।
ସୁରଙ୍ଗ ଦୁକୂଳ ଅଙ୍ଗେ କରି ପରିଧାନ,
ଅନଙ୍ଗ ମୋହିନୀ ରୂପେ ହେଲା ଦୃଶ୍ୟମାନ ।
ଭ୍ରମର ରବରେ କରି କିଙ୍କିଣୀ ବାଦନ
ଗାଇଲା ଝିଙ୍କାରି କଣ୍ଠେ ସଂଗୀତ ମୋହନ ।
ବାଳଇନ୍ଦୁ ବିରାଜିତ ଗଗନ ମଣ୍ଡଳେ
ସିନ୍ଦୁର ବିନ୍ଦୁ'କି ଶୋଭେ ତା'ଭାଲ ପଟଳେ ।
ସୁରଭିତ ଦେହ ତା'ର କୁସୁମ ସୁବାସେ
ଜନମନ ମୁଗ୍ଧ କରେ ମନ୍ଦ ମନ୍ଦ ହାସେ ।
ଉତ୍ସବ ଦର୍ଶନ ପାଇଁ ନାରୀଏ ଯେମନ୍ତ,
ବାସ ଭୂଷା ସିଦ୍ଧ ହୋଇଥାନ୍ତି ବହିର୍ଗତ,
ସେ ରୂପେ ସଜ୍ଜିତ ହୋଇ କୁସୁମ ସମ୍ଭାରେ
ଶୋଭିଲେ ବ୍ରତତୀ ତରୁ ବିବିଧ ପ୍ରକାରେ ।
ତରୁଲତା ପାଖ ପଶି ସ୍ୱୈର-ସମୀରଣ
ଚଞ୍ଚଳ ପଳାଏ କରି ସୁରଭି ହରଣ ।
ନବ ବଧୂ ପରି କେତେ ତାରକା ଗଗନେ
ଥରେ ଦେଖା ଦେଇ ପୁଣି ଲୁଚନ୍ତି ଗୋପନେ ।
ମାର୍ଗଣ * ବ୍ରାହ୍ମଣ ବେଶେ ଅଳି ଉପଗତ
ଗୀତ ଗାଇ ଫୁଲେ ଫୁଲେ ଭିକ୍ଷାରେ ସେ'ରତ ।

---

* ମାର୍ଗଣ—ଯାଚକ, ଭିକ୍ଷାର୍ଥୀ

ବିବଶେ ଅବୈଧ ପ୍ରେମେ ଥିବାରୁ ଆସକ୍ତ,
ରଥାଙ୍ଗ ମିଥୁନ ହୋଇ ସନ୍ଧ୍ୟା-ଶାପଗ୍ରସ୍ତ,
ପରସ୍ପର ନିକଟରୁ ମେଲାଣି ବହନ-
ଯେନ ଚଳିଗଲେ ଦୁହେଁ ହୋଇ ଛିନ୍ନମନ,
ହସ ହସ ମୁଖ ହେଲା କାସାରେ କୁମୁଦ
ମିଟାଇ କି ଦେଖାଇଲା ନିଜ ହୃଦମୁଦ ।
ଗିରି ଶିରେ ତୈଳହୀନ ସୁରମ୍ୟ ମଶାଲ
ଧାଡ଼ି ଧାଡ଼ି ଉଜଳିଗଲେ ଜାଳି ଚନ୍ଦ୍ରବାଳ,
ଯନ ସନ୍ଧ୍ୟାବାମ ରୂପେ ଧ୍ରୁବ ବନ୍ଧାଯୁସେ,
ଯାହିଁରେ ଉଇଁଲେ ଟହିଁ ରହିଲେ ହରଷେ
ପ୍ରଦୋଷ ଅନ୍ତଥିବେଶୀ ଆସି ଗାଭୀଗଣ,
କଲେ ନିଜ ନିଜ ସ୍ୱାମୀ-ଆଳୟ ମଣ୍ଡନ ।
'ପଦ୍ମିନୀ ରୂପସୀ' ବସି ଏ କାଳେ ବିଜନେ,
ଭାବନା ସାଗରେ ଭାସି ଭାସି ଏକ ମନେ,
ପତିଙ୍କ ମୁକତିପଥ ଖୋଜିଲେ ବହୁତ
କିନ୍ତୁ କାହିଁ ହେଲା ନାହିଁ ମତି ପରିତୃପ୍ତ ।
ଏହି ରୂପେ ବସି ବସି କେତେକ ସମୟ
ସହସା ମାନସେ ହେଲା, ବୁଦ୍ଧି ଏ ଉଦୟ ।
ଆଶା-କ୍ଷୀଣାଲୋକେ ତହୁଁ ହେଲା ମୁଖୋଜ୍ଜ୍ୱଳ
ଭାବିଲେ ତା' କଲେ କିପାଁ ନ ହେବ ସଫଳ ।
କରିବାକୁ ସେ ଉପାୟ କାର୍ଯ୍ୟେ ରୂପାୟିତ
'ବାଦଲ୍' ସହିତ 'ଗୋରା' ହେଲେ ଆମନ୍ତ୍ରିତ ।
ରାଣୀ ଆବାହନ ଶୁଣି ଆସିଲେ ଉଭୟେ
କିପାଇଁ ଡାକିଲ ମାତଃ ବୋଇଲେ ବିନୟେ ।
ଅଶ୍ରୁମୁଖୀ ହୋଇ ତହୁଁ ଭାଷିଲେ 'ପଦ୍ମିନୀ',
'ସଂସାରେ ମୋ'ଠାରୁ ଆଉ କେ'ଅଛି ପାପିନୀ ।
ଦେଖ ପ୍ରାଣପତି ପଡ଼ିଛନ୍ତି ବନ୍ଦୀଘରେ,
ପାପମତି ଯବନର ଶିବିର ଭିତରେ,

ଏ ଗଜନବରେ ରହି ମୁଁ ହତଭାଗିନୀ
ପତି ପାଇଁ ପ୍ରାଣାନ୍ତକ ଯାତନା ଭାଗିନୀ ।
ବୋଲୁଛୁ ଯବନ, ହେଲେ ମୁଁ ତା' କରଗତ
ନେବେ ଯାଇ ପ୍ରାଣନାଥ ହେବ ପ୍ରତ୍ୟାଗତ ।
କେଡ଼େ ମତିମନା ସେହି ଯବନ ଗଜନ
କାହାଠାରେ କେଉଁ କଥା କରେ ଉତ୍ଥାପନ ।
ଦିଲ୍ଲୀଶ୍ୱର ବୋଲି ଥାଇପାରେ ତା' ଗରବ,
ଥାଇପାରେ ହିମାଳୟ ତୁଲ୍ୟ ଗଜଇରବ,
ଭୂରି ରଖିଥାଉ ଘରେ ଧନପତି ଧନ,
ରଚିଥାଉ ଇନ୍ଦ୍ରପୁରୀ ସଦୃଶ ଭବନ,
ନିବାରଣ କରୁଥାଉ ଅବା ତାର କ୍ଷୁଧା,
ବିଶାଳ ଜଳଧି ଜାତ ଦେବଭୋଜ୍ୟ ସୁଧା,
ବିତ୍ତୁଥାଉ ମନ୍ଦାକିନୀ ନୀରେ ତା'ର ସ୍ନାନ,
ଲଭିଥାଉ ମୁନିଜନ ପରି ମହାଜ୍ଞାନ,
ଅଣିମା, ଲଘିମା ହୋଇଥାଉ କରଗତ,
ଈଶ୍ୱର ସାକ୍ଷାତ ଲଭେ ହେଉ ସମରଥ,
ସୁର ପଥେ ସୁର ରଥେ କରୁ ସେ ଭ୍ରମଣ,
ଦେବଦଳେ ଦେବସ୍ଥଳେ ଥାଉ ତା' ଆସନ;
ତଥାପି ଏ ମନ ହେବ ନାହିଁ ଆକର୍ଷିତ
ଶତ ଆକଞ୍ଚନେ * ମଧ୍ୟ ତା' ପ୍ରତି କଞ୍ଚିତ ।
ସେ'କି,ଛାର ହେଲେ ଇନ୍ଦ୍ର, ଚନ୍ଦ୍ର, ବିରୋଚନ
କରି ନ ପାରିବେ ମୋର ଚରିତ୍ର ପାତନ ।
ଦେଖି ତା'ର ଦୁଃସାହସ ସନ୍ତ୍ରସ ପାପରେ,-
ପାର ହେବା ପାଇଁ ହୋଇଅଛୁ ଆଗଭର ।
ହସ୍ତ ଉତ୍ତୋଳନ କରି ଅବା ସେ' ବାମନ,
ବିଜୁଳୀ ଧରିବା ପାଇଁ ବଳାଇଛୁ ମନ ।

---

* ଆକଞ୍ଚନ—ଚେଷ୍ଟା

ଶିଖରୀ ଶିଖରେ ପଛେ ଫୁଟିବ କମଳ,
ଜଳଧରୁ ବରଷିବ ପଛକେ ଅନଳ;
ହେଲେ ହେବ ପୁଷ୍ପବନ୍ତ ଶୂନ୍ୟ ବିହାୟସ,
କମ୍ବା ବନପ୍ରିୟ ବାଣୀ ହେବ କରକଶ;
ନ ବହିବ ସମୀରଣ ନ ଫଳଦ ଫଳ
ହୁତାଶନ ହୋଇଯିବ ଅଥବା ଶୀତଳ,
ଶୁଷ୍କ ହୋଇଯିବ ପଛେ ଜଳନିଧି ଜଳ
ଷରିବ ପନ୍ନଗ ଗାଭି-ସ୍ତନରୁ ଗରଳ,
ମନୁଷ୍ୟ ଉଦରୁ ପଛେ ଜନ୍ତୁ ଜାତ ହେବେ
ତଥାପି ମୁଁ ଯବନକୁ ନ ଭଜିବି କେବେ ।
ସ୍ୱାମୀ ଅନୁରୋଧେ, ପ୍ରଜା ମଙ୍ଗଳ ସାଧନେ
ଦେଖା ଦେଇଥିଲି, ବାରେ ତାକୁ ଦରପଣେ;
ଏବେ ଯେତେ କଲେ ମଧ୍ୟ କପଟ ରଚନ
ହେବ ନାହିଁ ସିଦ୍ଧକାମ କେବେ ସେ ଯବନ ।
କିନ୍ତୁ ମୋର ଜୀବନର-ଜୀବନ ମୂରତି,
ଭବାର୍ଣ୍ଣବ କର୍ଣ୍ଣଧାର ଅଗତିର ଗତି,
ତୃଷାତୁର ନୟନର ଅମୃତ ଝରଣ
ହୃଦୟ ତପତ-ନାଶୀ ଶାନ୍ତ ନିକେତନ ।
ଯବନ ଶିବିରେ ପଡ଼ି ଅଛନ୍ତି ଯାବତ
ଭୀଷଣ କଷଣ ପ୍ରାଣ ଦହେ ଅବିରତ ।
କି ଉପାୟ ଆଚରିଲେ ଲଭିବେ ମୁକତି
ତହିଁପାଇଁ ଡାକିଅଛି ତୁମ୍ଭଙ୍କୁ ମୁ କତି ।'
ବୋଇଲା ବାଦଲ 'ମାଗୋ ଏ ଛାର ବିଷୟ-
ପାଇଁ କିପାଁ ହେଉଅଛୁ ଏତେ ତୁ ଅଥୟ ।
ଯାବତ ମୁ କରିଅଛି ଶରୀର ଧାରଣ,
ଯାବତ ହେଉଅଛି ଦେହେ ରକ୍ତ ସଞ୍ଚରଣ,
ଯାବତ ବହିବ ମୋର ନିଃଶ୍ୱାସ ପବନ,
ଯାବତ ନୟନେ ହେବ ପଲକ ପତନ,

ରହିଥିବ ଯେତେଦିନ ମନରେ ସ୍ଫୁରଣ,
ଶ୍ରବଣ ଶକତି ଯେତେ ଥିବ ଏ ଶ୍ରବଣ,
ତାବତ ତୋ କାର୍ଯ୍ୟ ହେବ ନାହିଁ ଅସାଧିତ
ଏଥିପାଇଁ ବୃଥା ଆଉ ନ ହୁଅ ଖେଦିତ ।’
ମାତୃହୀନ ମତେ କରି ଲାଳନ ପାଳନ
ଜନ୍ମକାଳୁ ରଖିଅଛୁ ବଞ୍ଚାଇ ଜୀବନ,
ଏବେ ନ ପାରିବ ଯଦି ଫେଡ଼ି ତୋ କଷଣ,
ଜୀବନ ଧାରଣ ମୋର ହେବ ଅକାରଣ ।
ଏକ ଗୁପ୍ତ କଥା ମା’ଗୋ ଦେଲେ ତୁ ନିଦେଶ,
କାଲି ଏ’ ସେବକ ପଶି ସମ୍ରାଟ ନିବେଶ
ସୈନିକ ନିକର ତା’ର କରି ଛାରଖାର
ଛାରଖାର କରି ତା’ର ଆୟୁଧ ଆଗାର;
ଆଣିବ ଉଦ୍ଧାରି ତହିଁ ମଧ୍ୟୁଁ ଗ୍ରାମ ଗାର
ତା’ ସଙ୍ଗେ ଆଣିବ କାଟି ସମ୍ରାଟ’ର ଶିର ।
ଦେଖିବୁ ତୋ’ ଦତ୍ତ ଅନ୍ନ କେତେ ତେଜସ୍ୱାନ
ତୋ’ ପାଳିତ ଦେହେ କେତେ କାର୍ଯ୍ୟ ବିଦ୍ୟମାନ ।
ନ ହେଉଣ୍ଡୁ ରବି ଅସ୍ତ ନଗ-ବିଲମ୍ବିତ,
ନ ହେଉଣ୍ଡୁ ତାରାଚୟ ଗଗନେ ଉଦିତ
ନ ହେଉଣ୍ଡୁ ସରୋବରେ ସରୋଜ ମୁଦିତ
ନ ହେଉଣ୍ଡୁ ପକ୍ଷୀକୁଳ କୁଳାୟ ଆଶ୍ରିତ,
ନିଶ୍ଚୟ ଏ କାର୍ଯ୍ୟ ମୁହିଁ କରିବି ସାଧନ
ନ ହେଲେ ଅନଳେ ପଶି ତେଜିବି ଜୀବନ ।
ସତ୍ୟ ସତ୍ୟ ତିନିବାର ସତ୍ୟ ଏ ବଚନ
ଅନ୍ୟଥା ନ ହେବ ମୋର ବାକ୍ୟ କଦାଚନ ।
ବିଶେଷତଃ କାଲି ହେଉଛନ୍ତି ଅଗ୍ରସର
ଯବନ ସହିତ ରଣେ ଶତ୍ରୁ ଘୋର କାଶ୍ମୀର ।
ମୁଁ ତାଙ୍କ ଅଗ୍ରଣୀ ରୂପେ ଯିବାକୁ ଉତ୍ସୁକ
ଦିଅ ମା’ ବିଦାୟ ମତେ ହୋଇ ହର୍ଷମୁଖ ।’

ନୟନ ସଳିଳ ପୋଛି ପଦ୍ମିନୀ ବଦନ,
କାଦମ୍ବଙ୍କୁ କୋଳେ ଧରି କଲେ ଆଲିଙ୍ଗନ ।
ବୋଇଲେ, ବାପୁରେ କମ୍ପା ହେଉ ଥରଥର,
ସେ ଦନ ଆସୁଛି ହୋଇ ତୋ' ନିକଟତର ।
କର୍ମ ଯେବେ ସମୟରେ ହୁଏ ଅନୁଷ୍ଠିତ
ଶ୍ରମ ହୁଏ ତେବେ ଯାଇ ଫଳ ଅଧିକାରି ।
ଯେଉଁ ବିହଙ୍ଗମ ଯେଉଁ ମାର୍ଗଣରେ * ମରେ
ବୁଦ୍ଧିବାନ ବନଚର ତା' ପ୍ରୟୋଗ କରେ ।
ଯବନର ଅଭିଳାଷ ଯେପରି ଉତ୍କଟ,
ସେପରି ଉପାୟେ ତାକୁ କରିବା ବିନଷ୍ଟ ।
କାମନା ମୋହର ପତି-ମୁକତି ସାଧନ
କନ୍ତୁ ଧେ ଅକ୍ଷତ ଦେହେ ଫେରିବେ ଯେସନ ।
ଆଗେ ଯାଇ ତାହାଁ ପାଇଁ ଦେଖାଇଲେ ବଳ,
ପାପିଷ୍ଠ ଘଟାଇ ପାରେ କାନ୍ତ ଅମଙ୍ଗଳ ।
ଆଶ୍ୱାସ ବଚନେ ତାକୁ କରି ସମ୍ମୋହିତ,
କଉଶଳେ କରିହେବ କର୍ମ ସମାହିତ ।
ଏ ବିଷୟେ ମନାସିଛି ମନେ ଯା'ମୋହର
କହୁଅଛି ଅବହିତେ ତା' ଶ୍ରବଣ କର ।'
ତହୁଁ କହିଗଲେ ସତୀ ଯାବତ ବିଷୟ
ସୁଚିନ୍ତିତ ଭାବେ ଆଦ୍ୟପ୍ରାନ୍ତ ସମୁଦୟ ।
ତା'ଶୁଣି ବେନିଏ ହେଲେ ମନରେ ବିସ୍ମିତ,
ଅଲକ୍ଷେ ବଦନେ ତାଙ୍କ ଉଭା ହେଲା ସ୍ମିତ ।
ଆହ୍ଲାଦ ଅଧୀର ଗୋରା ଭାଷିଲେ ଉତ୍ତର,
ଧନ୍ୟ ତୁମେ ବୁଦ୍ଧିମତୀ ଚିନ୍ତାର ଆକର ।
ବିପଦ ସମୟେ ଯା'ର ବୁଦ୍ଧି ସମୁଦିତ,
ସେପରି ମାନବ ଜାତି ହୁଅନ୍ତି କ୍ୱଚିତ ।
ନାରୀ ହୋଇ କରିଛୁ ଯେ' ଉପାୟ ସୃଜନ,
ନ ପାରିବେ ଚିନ୍ତି ତାହା ଚିନ୍ତାଶୀଳ ଜନ ।

---

* ମାର୍ଗଣ—ଶର

ହେବ ତୁମ୍ଭ ନାମ ଦେବ ! ଜଗତେ ଘୋଷିତ,
ଯେ ଯାଏ ଭଜିବେ ନଭେ ଚନ୍ଦ୍ରମା ଆଦିତ୍ୟ ।
ଲକ୍ଷ୍ମଣଙ୍କ ଅଭିମତ ପ୍ରକାଶ୍ୟ ବିଗ୍ରହ,
ଗୋପନ ସାଧନ ଯୋଗ୍ୟ ତବ କାର୍ଯ୍ୟଚୟ ।
ଏବେ ଯାଇ ଲକ୍ଷ୍ମଣଙ୍କୁ କଲେ ନିବେଦନ,
କରିବେ ଅବଶ୍ୟ ତବ କାମନା ପୂରଣ ।
ପଦ୍ମିନୀ ବୋଇଲେ-'ଏହି ଭାର ସମୁଦାୟ
ତୁମ୍ଭ ହସ୍ତେ ନ୍ୟସ୍ତ ଜାଣି କର ତା' ଉପାୟ ।'
ପଦ୍ମିନୀ ନିକଟୁ ନେଇ ମେଲଣି ସତ୍ୱର
ଲକ୍ଷ୍ମଣ ସମୀପ ଗଲେ ବେନି ସହଚର ।
ବୁଝାଇ କହିଲେ ତାଙ୍କୁ ବିଷୟ ସକଳ,
କରିବୁଁ ଆଦେଶ ହେଲେ ଏ କାର୍ଯ୍ୟ ସଫଳ ।
ତାଙ୍କ କଥା ଶୁଣି ରାଣା ଦେଲେ ଅନୁମତି,
'ଶୀଘ୍ର କାର୍ଯ୍ୟ କର, ହୋଇ ସାବଧାନ ଅତି,
ଯେମନ୍ତ ଗୁପତ କଥା ଲବ ପରିମିତ,
ଯବନର କର୍ଣ୍ଣେ ହୋଇ ନ ପାରେ ପତିତ ।'
ତହୁଁ ଯାଇ ବେନି ଜନ ବସି ଏକାସନେ
କାହାକୁ କି ଭାର ଦେବେ ଭାବିଲେ ତା'ମନେ ।
ସେନାନୀ ନିକଟେ ଦେଲେ ସମ୍ବାଦ ତ୍ୱରିତ
ପ୍ରଭାତ'ର ଅଭିଯାନ ହେବାକୁ ବିହିତ ।
ପରଦିନ ପ୍ରତ୍ୟୁଷରୁ ଉଠି ବେନି ଜନ
ସମ୍ରାଟ ନିକଟେ କଲେ ସମ୍ବାଦ ପ୍ରେରଣ ।
ପତିଙ୍କ ମୁକତି ଅର୍ଥେ ଆତ୍ମ ବିସର୍ଜନ,
କରିବାକୁ ବଳିଅଛି ପଦ୍ମିନୀଙ୍କ ମନ ।
ରକ୍ଷାକରି ନିଜମାନ ମହତ୍ତ୍ୱ ସକଳ
ଏ'କାର୍ଯ୍ୟରେ ଅଗ୍ରସର ହେବେ ସେ'କେବଳ ।
କରିଛନ୍ତି ରାଜଗୃହେ ଜନମ ଗ୍ରହଣ,
ଏଣୁ ରାଜ ପଦ୍ଧତିରେ କରିବେ ଗମନ,

ସଙ୍ଗେ ଥିବେ ତାଙ୍କ ଶରୀରରକ୍ଷୀ ଗଣ,
ମର୍ଯ୍ୟାଦାନୁରୂପ କରି ଯାନ ଆରୋହଣ ।
ଆଉ ମଧ କେତେ ରାଜପୁତ କୁଳନାରୀ
ତାଙ୍କ ଅନୁଗାମୀ ହେବେ ନବରୁ ବାହାରି ।
କରିଛନ୍ତି ତାଙ୍କୁ ଯେଣୁ ସ୍ନେହରେ ବନ୍ଧନ
ଶିବିରୁ ବିଦାୟ ନେଇ ଫେରିବେ ବହନ ।
ରାଜପୁତ ରମଣୀଙ୍କ ସମ୍ମାନେ ଯେପରି,
ନ ପାରନ୍ତି କେହି ହେଲେ ହସ୍ତକ୍ଷେପ କରି,
ପଦ୍ମିନୀ ଶିବିରେ ହେବା ମାତ୍ରେ ଉପଗତ
ଭୀମ ସିଂହ କାରାମୁକ୍ତ ହୁଅନ୍ତି ଯେମନ୍ତ;
ଏଥିରେ ସମ୍ରାଟ ଯଦି ହୁଅନ୍ତି ସମ୍ମତ
ରୂପସୀ ପଦ୍ମିନୀ ହେବେ ତାଙ୍କ ଅନୁଗତ ।
ଦୁର୍ଗ ଅବରୋଧକାରୀ ସୈନିକ ନିକର,
ଯେଉଁ ଦିନ ହୋଇ ଦୁର୍ଗ ସୀମାରୁ ଅନ୍ତର,
କିଛି ଦୂର ଦେଶେ ଯାଇ ଶିବିର ସ୍ଥାପନ-
କରିବେ, ସେ ଦିନ ହେବ କାମନା ପୂରଣ
ଏ ବାର୍ତ୍ତା ଶ୍ରବଣେ ହୋଇ ଆନନ୍ଦ ବିହ୍ୱଳ,
ସେନାନୀକ ଡାକ ଆଲ୍ଲାଉଦ୍ଦିନ ଚଞ୍ଚଳ,
ଆଦେଶ ପାଳନ କଲ ଉଠାଇ ଛାଉଣୀ
କିଛି ଦୂରେ ସନ୍ନିବେଶ କରିବାକୁ ପୁଣି ।
ସମ୍ରାଟ ଆଦେଶ ହେଲା ଅଚିରେ ପାଳିତ,
ଦୁର୍ଗସୀମା ସଙ୍ଗେ ସଙ୍ଗେ ହେଲା ଅବାରିତ ।
ନିଜ ବୁଦ୍ଧି ପ୍ରତି କରି ପ୍ରଶଂସା ବହୁତ
ତହୁଁ ଆଲ୍ଲା ମନେ ମନେ ହେଲା କୃତକୃତ୍ୟ ।
ବୋଇଲା, 'ଏ' ବୁଦ୍ଧିବଳେ ଦିଲ୍ଲୀର ସମ୍ରାଟ-
ହେବାକୁ ମିଳିଲା ମୋତେ ସୁବିଶାଳ ବାଟ ।
ଏ'ତ ଛାର ରାଜପୁତ ଶର ବୁଦ୍ଧିହୀନ
ମୋ କୌଶଳେ ପଡ଼ିଗଲା ଜାଲେ ଯଥା ମୀନ ।

ପତ୍ର ଟିଏ ଲେଖି ଆଜ୍ଞା ପ୍ରଣୟ ଆବେଗେ
ପଦ୍ମିନୀଙ୍କି ନିବେଦିଲା ଆସିବାକୁ ବେଗେ ।
ପୁଣି ସେ ଲେଖିଲା ସଖି ! ଏକା ତୋ ନିମନ୍ତେ
ହେଉଅଛି ପ୍ରେମାତୁର ମୁ ଅନବରତେ
ଯେଉଁ ଦିନୁ ନିରେଖିଲି ତୋ ରୁଚିର ମୂରତି
ନିଦ୍ରା ଆଜ ଆସୁ ନାହିଁ ମୋ ନୟନ କତି
ଅନୁକ୍ଷଣେ ସେ ପ୍ରତିମା ଚକ୍ଷୁ ସମକ୍ଷରେ-
ନୀଡ଼ା କରି ଜୀବନକୁ ନଷ୍ଟଭ୍ରଷ୍ଟ କରେ ।
ଲୋକ ମୁଖେ ଶୁଣିଥିଲି ଯାହା ତୋ ବିଷୟ
ଲକ୍ଷ୍ୟ କଲି ଲକ୍ଷ ଗୁଣ ତହୁଁ ତା ନିଶ୍ଚୟ ।
ସହସ୍ର ରତନ କାନ୍ତି ତୋ'ଦେହେ ପୂରିତ
ତୋ' ଦର୍ଶନେ ଦୂର ହେବ କୋଟିଏ ଦୁରିତ ।
ଯା' ମଧ୍ୟରେ ବସାଇବୁ ତୁହି ଲୋ ସୁନ୍ଦରି,
ଇନ୍ଦ୍ର ଚନ୍ଦ୍ର ତାର କେହ୍ନି ହେବେ ନାହିଁ ସରି ।
ବୁଦ୍ଧି ଯୋଗୁଁ ଭାଗ୍ୟ ମୋତେ ସଦା ସୁପ୍ରସନ୍ନ,
ତେଣୁ ମୋର ଅଙ୍କ ଲକ୍ଷ୍ମୀ ହେବାକୁ ତୋ'ମନ ।
ଜୀବନ ତୋଷିଣି ! କର ଶୀଘ୍ର ଆଗମନ,
ଜୀବନରେ ଜୀବନକୁ କର ସଞ୍ଚରଣ ।
ଆଦେଶ ତୋହୋର ଯାହା ହେବ ସୁପାଳିତ,
ତହିଁପାଇଁ ହୁଅ ନାହିଁ କିଞ୍ଚିତ ଭାବିତ ।
ତୋର ଆଗମନ ମାତ୍ରେ ଆମଙ୍କୁ ସତ୍ୱର
ଛାଡ଼ି ଦେବ ବନ୍ଧୁ ଭାବେ କରି ସମାଦର ।
ବହୁ ଧନ-ରତ୍ନ-ଦାନେ ତାଙ୍କୁ କରି ସୁଖୀ,
ତା'ପରେ ତୋ'ସହ ହେବ ଧଲ୍ଲୀ ଅଭିମୁଖୀ ।



# ନବମ ସର୍ଗ

ବିପୁଳ ଉତ୍ସାହେ ଆଜି ଚିତୋର ନଗରେ
ଖେଳଇ ସାଗରେ ଯଥା ତରଙ୍ଗ ନିକର ।
ବୀରବେଶେ ହୋଉଛନ୍ତି ସୈନିକେ ସଜ୍ଜିତ
ବୀରତ୍ୱ ଛଟାରେ ତାଙ୍କ ବଦନ ପ୍ରଦୀପ୍ତ ।
ସୁଦୃଢ଼ କବଚେ ଗାତ୍ର ହୋଇଛି ଆବୃତ,
ବିବିଧ ପ୍ରକାର ହାର ବକ୍ଷରେ ବିଧୃତ ।
ସୁଶାଣିତ କରବାଳ ହସ୍ତେ ବିରାଜିତ,
ସ୍ୱର୍ଣ୍ଣର ଶିରସ୍ତ୍ରମାଳ ମସ୍ତକେ ମଣ୍ଡିତ ।
ଢାଲ, ଭିନ୍ଦିପାଳ, ଶେଲ, ପରଶୁ କୁଠାର,
ଯନ୍ତ୍ର ସହ ବାନ୍ଧି ରଖିଛନ୍ତି ସେ ଯାହାର ।
ରଙ୍ଗିଆ ଜଙ୍ଘିଆ କଟିତଟେ ଦୋହରଣ
ତା' ଉପରେ ସାରସନ * ହରଇ ନୟନ
ସୁଚିଲ କଙ୍କଣ କରେ ଭୁଜେ ଭୁଜବନ୍ଧ
ଚହିଁଲ ମାତ୍ରେ ହୃଦେ ଉପୁଜେ ଆନନ୍ଦ ।
ପ୍ରତି ଗାଲେ ଗାଲ ମୁଞ୍ଛ ଦିଶେ ଶୋଭମାନ
ଲଲାଟେ ସିନ୍ଦୂର ଚିତା ମୁଖେ ଖିଲିପାନ ।
ଏହି ରୂପେ ବୀରଗଣ ସାଜି ନାନା ମତେ
ବାଦଲ ଗୋରାଙ୍କୁ ଠାକି ରହିଲେ ସମସ୍ତେ ।
କିଛି କ୍ଷଣ ପରେ ତହିଁ ଆସୁଛନ୍ତି ବେନି,
ଦିବ୍ୟ ବେଶେ ପିନ୍ଧି ଦିବ୍ୟ ଅସ୍ତ୍ରଶସ୍ତ୍ର ଘେନି ।
ମହାନନ୍ଦେ ପ୍ରଫୁଲ୍ଲିତ ବେନିଙ୍କର ମନ,
ଆଗେ ଗୋରା, ପଛେ କରେ ବାଦଲ ଗମନ ।

---

* ସାରସନ—କଟିବନ୍ଧନ

ଶିବିକା ଆସଇ ତାଙ୍କ ପଛେ ଅଗଣିତ,
ବିଚିତ୍ର ବରଣ ଆବରଣ ବିମଣ୍ଡିତ ।
ତହିଁ ମଧ୍ୟେ ପଶିଗଲେ ଜଣେ ଜଣେ ବୀର
ମେଘ ଅନ୍ତରାଳେ ଯେସନ୍ତେ ଲୁଚଇ ମିହିର ।
ଅବଶିଷ୍ଟ ବୀର ହୋଇ ଛଦ୍ମବେଶ-ହିତ
ଆୟୁଧ ସକଳ କଲେ ତା ମଧ୍ୟେ ନିହିତ ।
ତହୁଁ ଗୋଟି ଗୋଟି କଲେ ଶିବିକା ବହନ
ପବନ ଭବନ ବେଗେ ଗଲେ ବହନ ।
ଛଦ୍ମି ପଦ୍ମିନୀ ହେଲେ ଏ ରୂପେ ବାହାର
ଅନୁଯାତ୍ରୀ ତାଙ୍କ ଅନୁରୂପ ସଖୀ ବାର ।
ଚିତ୍ରସେନ ଗନ୍ଧର୍ବର ବିଚିତ୍ର ଉଦ୍ୟାନେ
ବିହାରାର୍ଥ ଯାନ୍ତି କି, ଏ କୁରୁ ନାରୀ ମାନେ ?
ଦୂରକୁ ସୁନ୍ଦର ଦିଶେ ସରୋବର-ନୀର
କେ ଜାଣି ପାରିବ ଥିଲେ,ତା'ମଧ୍ୟେ କୁମ୍ଭୀର ।
ଶୁଦ୍ଧ ବୋଧ ହୋଇଥାଏ ଯେସନ ପବନ
ଭିତରେ ତା ବିଷକୀଟ ଥାନ୍ତି ଅଗଣନ ।
ଶିବିର ସମ୍ମୁଖେ ବସି ଦିଲ୍ଲୀ ନାଥ,
ଚତୋର ନଗରେ ପ୍ରତି କଲା ଦୃଷ୍ଟିପାତ ।
ଏ କାଳେ ଶିବିକା ଶ୍ରେଣୀ ତହୁଁ ବିନିର୍ଗତ-
ହୋଇ ସୁଧାସିକ୍ତ କଲେ ତା' ନୟନ ପଥ ।
ମହାନନ୍ଦେ ଉଭା ହୋଇ ରହିଲା ଅନାଇ
ପଦ୍ମିନୀ ଶିବିକା କାହିଁ ଚିହ୍ନିବାର ପାଇଁ ।
ଆହୁରି ସେ ମନେ ମନେ ହେଲା ପୁଲକିତ,
ଏତେ ଦିନେ ହେଲା ବୋଲି ଆଶ୍ୱାସ ଫଳିତ ।
ଘେନିଲା କି ଦ୍ରବ୍ୟ ଦେଲେ ଭାବି ଭଗିନୀ'କି
ମୋ ପ୍ରତି ଆସକ୍ତ ହେବ ତା' ମତି ଏଣିକି ।
ଧ୍ୟାନକୁ ପାଶୋରି ମତେ ପରିବର୍ତ୍ତେ ତାର-
କରି ରଖିଥିବ ସଦା ହୃଦୟର ହାର ।

କରୁଥିବ ପ୍ରେମାବେଶେ ଆଦେଶ ପ୍ରଦାନ
ପ୍ରେମଦଣ୍ଡ ଦେବ, କଲେ ତା କଥା ଅମାନ୍ୟ ।
ବାନ୍ଧବା ପ୍ରେମର ଡୋରେ ଥିବ ମୋତେ ବାନ୍ଧି,
ଅବାଧ ମୁଁ ହେଲେ ବାଧ କରୁଥିବ କାନ୍ଦି ।
ପ୍ରେମର ଦୋକାନ ଖୋଲି ବସିଥିବ ସଖୀ,
ପ୍ରେମ କଣା ଦେବ ମୋଠୁଁ ଧନ ଦ୍ରବ୍ୟ ରଖି ।
ପୁଣି ମୋ ପ୍ରେମରେ ଧନୀ ହୋଇ ବଶୀଭୂତ,
କରିବ ସେ ସବୁ ଦ୍ରବ୍ୟ ମୋତେ ପୁରସ୍କୃତ ।
ଚକ୍ଷୁରନ୍ଧ୍ରଗଳ ହେଲେ ମରୁଥିବ ଝୁରି,
ଦେଖିଲା ମାତ୍ରେ ଉଦର ଦେଉଥିବ ପୂରି ।
ପ୍ରେମ ଗୀତ ଗାଉଥିବ ପାଖରେ ବସାଇ
କଣି ନେଉଥିବ ମୋତେ ହସାଇ ରସାଇ
ଏହି ରୂପେ ନାନା କଥା ଭାବଇ ତା'ମନ,
କଲ୍ପିତ ଆମୋଦ-ହ୍ରଦେ କରେ ସନ୍ତରଣ ।
କ୍ରମଶଃ ଶିବିକା ଶ୍ରେଣୀ ହେଲା ସମୀପସ୍ଥ
ତା'ଦେଖି ସମ୍ରାଟ ହେଲା ଅତି ବ୍ୟତିବ୍ୟସ୍ତ ।
ନିକଟରେ ଥିଲା ଏକ ପ୍ରକାଣ୍ଡ ଶିବିର,
ଶିବିକା ରହିବା ଲଗି ତାହା କଲା ସ୍ଥିର ।
ସତ୍ୱର ଆଦେଶ ଦେଲେ ଭୃତ୍ୟ ପରିଜନେ
ଯାଇ ନ ପାରିବେ ବୋଲି ତହିଁ କେହି ଜଣେ ।
ସେ ବାରଣ ଶୁଣି ଗ୍ରାମ ମୂର୍ମୁର * ସମାନ
ଭିତରେ ଭିତରେ ସେତେ ହେଲେ ଦହ୍ୟମାନ ।
ମନେ କଲେ ମୁକ୍ତ ମାତ୍ରେ ପଦ୍ମିନୀ ନିକଟ-
ଯାଇ ତାକୁ ଅସିଦ୍ୱେଷେ କରିବ ବିନଷ୍ଟ ।
"ରୂପବନ୍ତୀ ନାରୀ ଶତ୍ରୁ" ଯେ ଅଛନ୍ତି କହି
ତାଙ୍କ ବାକ୍ୟ ମୂଳେ ଶିର ସତ୍ୟ ଅଛି ରହି ।

* ମୂର୍ମୁର—ତଷୂନିଆଁ

ପାପୀୟସୀ କର ପତି-ମୁକ୍ତିର ଛଳନା,
ଆସିଛି ହେବାକୁ ଏବେ ଯବନ-ଲଳନା,
ରମଣୀଏ ପ୍ରକୃତକୁ ଠକ ଏହିପରି
ସୁଯୋଗ ପାଇଲେ ଇଚ୍ଛା ଆନ୍ତି ପୂର୍ଣ୍ଣ କରି ।
ଅନ୍ୟ କ୍ଷଣେ ପୁଣି ମନେ ହେଲା ତାହାଙ୍କର
ପଦ୍ମିନୀର ପାତିବ୍ରତ୍ୟ ନୁହେଁ ସାମକର ।
ଏତେ ପରୀକ୍ଷାକୁ ଅଛି ଯେ' ଧର୍ମ ଆଚରି
ଏତେ ଶୀଘ୍ର ତାକୁ ଦେବ ପାଶୋରି କିପରି ?
ନିଶ୍ଚୟ ରହସ୍ୟ ଅଛି ଏଥି ବିଜଡ଼ିତ
ଭାବ ଭାବ ଚିତ୍ତ ହେଲା ଘୋର ଆନ୍ଦୋଳିତ ।
ଏହିରୂପେ ଭୀମ ସିଂହ ବସି ନିକାଞ୍ଚନେ,
ଭାବୁଛନ୍ତି ପଦ୍ମିନୀଙ୍କ କଥା ମନେ ମନେ;
ଏ' କାଳେ ପ୍ରହରୀ ଏକ ହୋଇ ଉପଗତ
ଜଣାଇଲା ସବିନୟେ ଯୋଡ଼ି ବେନି ହସ୍ତ ।
ସମ୍ରାଟ ଆଦେଶ ମତେ ହେ' ଚିତୋର ନାଥ,
କରନ୍ତୁ ପଦ୍ମିନୀ ସଙ୍ଗେ ଚରମ ସାକ୍ଷାତ ।
ନିକଟେ ବିଶଇ ଏ' ଯେ, ଶିବିର ସୁନ୍ଦର,
ତହିଁ ମଧ୍ୟେ ବିଜେ କରିଛନ୍ତି ନାଟ୍ୟବର ।
ଘଟିକାର୍ଦ୍ଧ ମାତ୍ର ତହିଁ କରି ଅବସ୍ଥାନ
ବାହୁଡ଼ିବେ ବେଗେ ଦିଲ୍ଲୀ-ପତି ସନ୍ନିଧାନ ।
ବହୁ ଧନରତ୍ନ ହୋଇଅଛି ଏକତ୍ରିତ,
ଶ୍ରୀ' ଙ୍କୁମୁଙ୍କ କରେ ହେବା ପାଇଁ ସମର୍ପିତ ।
ଶୁଣି ମନକଥା କରି ମନରେ ଗୋପନ
ଶିବିରଭିମୁଖେ କଲେ ତ୍ୱରିତ ଗମନ ।
ଭିତରକୁ ଯାଇ ଯାହା କଲେ ଦରଶନ
ତହିଁରେ ସନ୍ଦେହ ସବୁ ହେଲା ନିରସନ ।
ଗୋଟି ଭକ୍ତି ଭରେ ଧରି ଭୀମଙ୍କ ଶ୍ରୀ କର
ବସାଇଲେ ନେଇ ଏକ ଶିବିକା ଭିତରେ ।

ଧରି ତାହା ବେଗଗାମୀ ଶିବିକା ବାହକେ
ବୋହିନେଲେ ବହୁଦୂର ନିମିଷ ମାତ୍ରକେ
କ୍ରମେ ପ୍ରବାହିତ ହେଲା ପଛେ ପଛେ ତା'ର
ଶିବିର ଭିତରୁ ଦ୍ରୁତ ସ୍ରୋତ ଶିବିକାର ।
କିଛି ଦୂରେ ଅବସର ବୁଝି ଭୀମ ବୀର
ଅଶ୍ୱଯାନେ ଚଢ଼ିଗଲେ ଆପଣା ମନ୍ଦିର ।
ପଦ୍ମିନୀ ସହିତ ଭୀମ ଦୀର୍ଘ ଆଳାପନ-
କରୁଅଛି ଭାବି, କ୍ଷୁବ୍ଧ ହେଲା ଆଲ୍ଲାମନ ।
ବୋଇଲା-'ଯେ ହୋଇ ପତି-ମୁକ୍ତି-ଭିକାରିଣୀ
ଏବେ ହୋଇଅଛି ମୋର ପ୍ରେମାଧିକାରିଣୀ
ତା' ସହିତ ଭୀମ ଏତେ ବେଳ ସମ୍ଭାଷଣ-
କରୁଅଛି ଦେଖ ତା'ର ମନ୍ଦ ଆଚରଣ ।
ସହଜେ ନ ଦେଇ ନାରୀ ହେଲା ଏତେ ପର
ତଥାପି ରହିଛି ଜାଣି ନ' ଜାଣିଲା ପରି ।
ଯାଇ କେହି ଡାକ ଆଣ ଭୀମକୁ ଏ ଥର
ଚଞ୍ଚଳ ଏଠାରୁ ତାକୁ କରିବା ଅନ୍ତର ।'
ସମ୍ରାଟ ଆଦେଶେ ଯାଇ ବେଗେ ଭୃତ୍ୟଗଣ,
ଭୀମଙ୍କୁ ଡାକିଲେ ତମ୍ବୁ ପାଖେ ଘନ ଘନ ।
ନ ଶୁଣିଲେ ଭୀମ ସିଂହ ନ ଶୁଣିଲେ କେହି
ଶେଷେ ଗଲେ ଭିତରକୁ ରୁଦ୍ଧ ଦ୍ୱାର ଫେଇ ।
ନାହିଁ ତହିଁ ଭୀମ ସିଂହ କିମ୍ବା ତା ପଦ୍ମିନୀ
ପଦ୍ମମୁଖୀ ପଦ୍ମାଳୟା-ରୂପିଣୀ ପଦ୍ମିନୀ ।
କିନ୍ତୁ ଦୂରେ ରହିଛନ୍ତି ବୀର ଅଗଣିତ,
ଯୋଦ୍ଧୃବେଶେ ହୋଇଛନ୍ତି ସକଳେ ସଜ୍ଜିତ ।
ପଳାଇଲେ ସର୍ବେ କରି ସଭୟ ଚିତ୍କାର,
ଆଲ୍ଲାପାଖେ ନିବେଦିଲେ ତାହା ସବିସ୍ତାର ।
ସୈନିକ ଗଣଙ୍କୁ ତହିଁ ବେଗେ ଦିଲ୍ଲୀପତି
ତାଙ୍କ ସହ ଯୁଝିବାକୁ ଦେଲା ଅନୁମତି ।

ପଳାୟିତ ଭ୍ରମେ ପୁଣି ଧରିବାର ପାଇଁ
କେତେ ଅଶ୍ୱାରୋହୀ ଗଲେ ଅଶ୍ୱ ଦଉଡ଼ାଇ ।
ସେମାନଙ୍କ ପଥ ରୋକି ରାଜପୁତଗଣ
ଭୟାବହ ଆହବରେ ମାତିଲେ ବହନ ।
ସେ ଦଳେ ତୁମୁଳ ଯୁଦ୍ଧ ହେଲା ଅଭିମତ
ଯବନ ଶିବିର ପାଖେ ବର୍ଣ୍ଣନା ଅତୀତ ।
ବୁଭୁକ୍ଷୁ କେଶରୀ ଯଥା ପାଇଲେ ଶିକାର,
ଧରି ତାକୁ ସେହିକ୍ଷଣି କରଇ ସଂହାର,
ସେହି ରୂପେ ରାଜପୁତେ ହୋଇ ଉନମତ୍ତ,
ଯବନ ଗଣଙ୍କୁ କଲେ କ୍ଷଣକେ ନିହତ ।
ସେହି କ୍ଷଣି ଆସି ପୁଣି ଅନ୍ୟ ସେନା ଦଳ
ଅଧିକାର କଲେ ମୃତ ପୃତନାର * ସ୍ଥଳ ।
ଲଗିଲା ଉଭୟ ଦଳେ ଭୀଷଣ ଆହବ,
ଧୂଳି ଜାଲେ ପରିପୂର୍ଣ୍ଣ ହୋଇଗଲା ନଭ,
କୃପାଣ, ପରଶୁ, ଶେଲ ଆଦି ଅସ୍ତ୍ର ଧରି
ମାରୁଛନ୍ତି ଯେ ଯାହାକୁ ପାରେ ଲକ୍ଷ୍ୟ କରି ।
ଝଡ଼ି ପଡ଼େ କେତେ ମୁଣ୍ଡ ତେଜି ଗ୍ରୀବାସ୍ଥଳ
ପ୍ରବଳ ପବନେ ଯଥା ବୃକ୍ଷୁ ପଡ଼େ ଫଳ ।
କାହାର ଗୋଟିଏ ହସ୍ତ ହୋଇଅଛି ନାଶ
ଅନ୍ୟ ହସ୍ତେ କରୁଅଛି ବୀରତ୍ୱ ପ୍ରକାଶ ।
ଜାନୁ-ଚ୍ଛେଦ ହୋଇଅଛି ଅଥବା କାହାର
କାହାଙ୍ଗିରୁ ଝରୁଅଛି ରକତର ଧାର
ପ୍ରାଣ ଭୟେ କେତେ କରୁଁ କରୁଁ ପଳାୟନ
ପଛ ପଟୁ ବାଣ ଖାଇ ତେଜନ୍ତି ଜୀବନ ।
ଅସଂଖ୍ୟ ଯାବନୀ ସେନା ବେଢ଼ି ଚଉପାଶ
ବହୁ ପରିମାଣ କଲେ ଶତୋଗ୍ର ବିନାଶ ।

* ପୃତନା—ସୈନ୍ୟଦଳ

ଯେ' ଦିଗେ ନୟନ ପଡ଼େ ଦିଶଇ କେବଳ
ବିପୁଳ ଯବନ ବଳ ଯେହ୍ନେ ସିନ୍ଧୁଜଳ ।
ଚିତୋଶଙ୍କୁ ନ ମିଳଇ ପଳାୟନ ପଥ
ଅରି-କରେ ତହିଁ କେତେ ଲଭିଲେ ପଞ୍ଚତ୍ୱ ।
ଦୂରେ ଥାଇ ଦେଖି ଏହି ଦୃଶ୍ୟ ମର୍ମଦାହୀ
ପଲକ ପତନ ମାତ୍ର ଚହିଁଗଲା ଧାଇଁ ।
ମହା ପରାକ୍ରମୀ ଗୋରା ଦେଖାଇ ବିକ୍ରମ,
ବୁଲାଇ ପ୍ରଚଣ୍ଡ ବେଗେ ଅସି ଅନୁପମ,
ନନ୍ଦବନଶୂର-ମତ୍ତ-ମତଙ୍ଗଜ ପରି
ଯବନ ସେନାକୁ ଦେଲା ବିମର୍ଦ୍ଦନ କରି ।
ପଛେ ପଛେ ଥାଇ ତାର ବାଦଲ ପ୍ରବୀର
ଦେହ ଭିନ୍ନ କରୁଥାଏ କାଟି ଅରି-ଶିର ।
ସମବୀର୍ଯ୍ୟ ସମତେଜ ବେନି ବୀରବର
ନ ପାରି ଅରି' ଏ ତିଷ୍ଠି ସମକ୍ଷେ ତାଙ୍କର
ପଲାଇଲେ ଅବଲମ୍ବି ଯେ ଯାହା ଅୟନ
ଯେ ରହିଲେ କଲେ ରଣ-ଭୂମିରେ ଶୟନ ।
କିଛି କ୍ଷଣେ ପୁଣି ବେଗ-ଗାମିନୀ ବାହିନୀ-
ରୂପେ ଆସି ଅନ୍ୟ ଏକ ଯବନ ବାହିନୀ,
ରଚିଲେ ଭୀଷଣ ରଣ ସଙ୍ଗେ ବେନିଙ୍କର
ଯୁଝିଲେ ବେନିଏ ତିଳେ ନ ହୋଇ କାତର ।
ବର୍ଷାରମ୍ଭେ ଯେଉଁପରି କରି ଘଡ଼ ଘଡ଼
ଜଳଧରେ ଦେଇଥାନ୍ତି ଭୟଙ୍କର ରଡ଼ି,
ଚଉଦିଗେ ହେଉଥାଏ ଚପଳା ସ୍ଫୁରଣ
ଅନର୍ଗଳ ଧାରେ ହୁଏ ବାରି ବରଷଣ,
ତଦ୍ରୂପ ସେ-ବୀରେ କରି ଭୀଷଣ ଗର୍ଜ୍ଜନ
ସୁଶାଣିତ ଅସି କରି ପ୍ରଚଣ୍ଡ ଘୂର୍ଣ୍ଣନ,
ବିକାରିଲେ ତେଜୋରାଶି ତାର ଚନ୍ଦାକାର
ବୁହାଇ ଅଜସ୍ର ଅଙ୍ଗୁ ଝର ରକ୍ତ ଧାର ।

ଗଜପୃଷ୍ଠ ପ୍ରହରଣ ହେବାରୁ ଅଦୃଶ୍ୟ
ଅଗ୍ନି ଯନ୍ତ୍ରେ ଆରମ୍ଭିଲେ ଯବନେ ବିଗ୍ରହ ।
ବରଷି ପ୍ରଚଣ୍ଡ ଗୋଳାଗଣି ଅପ୍ରମିତ
କେତେ ଛଟୁଆଙ୍କୁ କଲେ ଜୀବନୁ ବଞ୍ଚିତ ।
ଛଟୁଆଏ କରି ଶତ ଶତଘ୍ନୀ ପ୍ରହାର
ଯବନଙ୍କୁ କଲେ ଯୁଦ୍ଧ ଭୂମିରୁ ବାହାର ।
ଅବସର ପାଇ ଗୋରା ଦୂର କଲେ ଶ୍ରମ
ପୋଛି ପକାଇଲେ ମୁଖୁ ଶ୍ରମଜ ଘରମ ।
ଗୋଳାଟିଏ ଅଲକ୍ଷିତେ ଆସି ଏହି କାଳେ
ସବେଗେ ପଡ଼ିଲା ଗୋରା ଉନ୍ନତ କପାଳେ ।
ସେ ଭୀଷଣାଘାତେ ବୀର ସହଜେ ଆଶକ୍ତ-
ହୋଇ ଭୂମିତଳେ ପଡ଼ି ହେଲେ ମୂର୍ଚ୍ଛାଗତ ।
ନିକଟସ୍ଥ ବାଦଲର ପ୍ରାଣାନ୍ତ ଯତନ-
ଫଳେ କିଛି କାଳେ ହେଲା ଜ୍ଞାନ ସଞ୍ଚରଣ ।
କିନ୍ତୁ ବୀର ନ ପାରିଲେ କହି ଆଉ କଥା
ମର୍ମେ ମର୍ମେ ବିଦାରଣ କରିବାରୁ ବ୍ୟଥା ।
ପରିଶେଷେ ବାହୁଯୁଗ କରି ପ୍ରସାରଣ,
ବାଦଲଙ୍କୁ ବକ୍ଷେ ଧରି କଲେ ଆଲିଙ୍ଗନ ।
ବାଦଲ ଭିଡ଼ିଲା କ୍ଷୁଦ୍ର ହସ୍ତେ ଗୋରା ବକ୍ଷ,
ଉଭୟେ ରହିଲେ ହୋଇ ଉଭୟୁ ସମକ୍ଷ ।
କପାଳେ ନିବେଶି କର ସଜଳ ନୟନେ
ଅନାଇ ରହିଲା ବୀର ବାଦଲ ବଦନେ ।
ତହୁଁ ତାର ଶିରେ ବେନି କର ସଂସ୍ଥାପନେ
ଆଶୀର୍ବାଦ ଜଣାଇଲା ନୀରବ ଭାଷଣେ ।
ଗଣ୍ଡେ ପୁଣି କରୁଁ କରୁଁ ଶେଷ ଚୁମ୍ବଦାନ
ଚିଦାନନ୍ଦ ଧାମେ କଲା ଆନନ୍ଦେ ପ୍ରୟାଣ ।
ଛଟୁଆଏ ଏହା ଦେଖି କଲେ ହା'ହା'କାର,
ବହିଲା ପ୍ରବଳ ବେଗେ ଶ୍ୱାସ ନାସିକା'ର ।

ଅବସନ୍ନ ହୋଇଗଲା ତାଙ୍କ ମନ-ପ୍ରାଣ
ହାତରୁ ପଡ଼ିଲା ଖସି ରକ୍ତାକ୍ତ କୃପାଣ ।
ଘନ ଘନ କରି ନେତ୍ର-ନୀର ବିସର୍ଜନ,
ମକାତରେ କଲେ ମୃତ ଆତ୍ମାର ତର୍ପଣ ।
ଅସ୍ତାଚଳେ ଅସ୍ତ ହେଲେ ଦେବ ବିକର୍ତ୍ତନ
କ୍ରମେ ତମଃ ପୁଞ୍ଜେ ହେଲା ଅବନୀ ଆଚ୍ଛନ୍ନ ।
ଅନ୍ଧକାର କଲା ନିଜ ମହିମା ପ୍ରଚୁର
ସପକ୍ଷ ବିପକ୍ଷ ସର୍ବେ କରି ଏକାକାର ।
ବିଷମ ବ୍ୟାପାର ହେଲା ଅସ୍ତ୍ର ସଞ୍ଚାଳନ
ଅରି ମାରୁମାରୁ ମଲେ ଆତ୍ମ ପକ୍ଷଜନ ।
ଶତ୍ରୁ ମିତ୍ର ଭେଦ ବାରି ନ ହେଲା କଞ୍ଚିତ
ଆର୍ତ୍ତନାଦୁ ଜଣାଯାଏ କେ' ଅରି କେ' ମିତ୍ର ।
ଏହିପରି କଛି କ୍ଷଣ ଯୁଦ୍ଧେ ହୋଇ ରତ
ଯାହାକୁ ଯେ' ପାରେ କଲେ ଚକ୍ଷୁ ବୁଜି ହତ ।
ଅତିଶୟ ରଣ କ୍ଲାନ୍ତ ହୋଇ ବୀରଗଣ
କ୍ରମେ ଯାଇ ଆଶ୍ରାକଲେ ଯେ' ଯାହା ଭବନ ।
ହତ ଅବଶିଷ୍ଟ ସେନା ଥିଲେ ଯେ ସକଳ,
ତାଙ୍କ ସହ ଗୃହାଗତ ବିଜୟୀ ବାଦଲ
ସଜଳ ନୟନେ ଶୋକ ଗଦ୍‌ଗଦ ବଚନେ
ଜଣାଇଲା ଯୁଦ୍ଧ ବାର୍ତ୍ତା ଭୀମ'ଙ୍କ ଚରଣେ ।
ବୋଇଲା, "ଭୋ ଦେବ ! ମାରି ଅସଂଖ୍ୟ ସୈନିକ,
ଦେଖାଇ ବିକ୍ରମ ଘୋର ଅତିମାନୁଷିକ
ଜୟଶ୍ରୀ ମଣ୍ଡିତ ହୋଇ ଲଲାଟ ପଟଳେ,
ଦିବାକରେ ବିଲମ୍ବିତ ଦେଖି ଅସ୍ତାଚଳେ,
ଫେରିବା ଉଦ୍ଦେଶ୍ୟେ ପୋଛୁଥିଲେ ମୁଖ ସ୍ୱେଦ
ଏ' ସମୟେ ଗୋଳା ଟିଏ ଘାଲେ କଲା ଭେଦ,
ସେହି ଗୋଳାଘାତେ ଘୋର ହୋଇଁ ଅଚେତନ,
ଶେଷ ହରାଇଲେ ତାଙ୍କ ଅମୂଲ୍ୟ ଜୀବନ ।'

ବାଦଲ ବଚନେ ଶୁଣି ହୋଇ ଶୋକାଚ୍ଛନ୍ନ,
ବୋଇଲେ 'ମୋ ପାଇଁ ଗୋପ ତେଜିଲେ ଜୀବନ ।'
ପର ଉପକାରେ ବୀର କଲେ ଆତ୍ମଦାନ
ତାଙ୍କ ପକ୍ଷେ ଏହା ଏକ ଅମର ସମ୍ମାନ ।
ଧନ୍ୟ ସେ ଯା' ଗର୍ଭେ ବୀର ହୋଇଛନ୍ତି ପ୍ରଭବ
ଧନ୍ୟ ଏ ଉତ୍କଳର ଲଭି ତା' ତୁଲ୍ୟ ମାନବ ।
ତହୁଁ ଗ୍ରାମଠାରୁ ନେଇ ମେଲାଣି ଚଞ୍ଚଳ
ଗୋପ-ପତ୍ନୀ ପାଖେ ଉଭା ବାଳକ ବାଦଲ ।
ତା' ଦର୍ଶନେ ନାରୀ ହୋଇ ଆନନ୍ଦ ମଗନ
ସ୍ନେହେ କୋଳେ ଧରି କଲେ କପୋଳ ଚୁମ୍ବନ ।
ବୋଇଲେ, 'ବାବୁରେ ଦେଖି ତୋ ଚନ୍ଦ୍ର ବଦନ
ଅପାର ଆନନ୍ଦ କରେ ମୋ ନେତ୍ରେ ନର୍ତ୍ତନ ।
ଚାହିଁଥିଲି ବସି ବାବୁ ତୋ' ପାଇଁ ସ୍ୱଜନେ,
ଦେଖା ଦେଲୁ ଏବେ ମୋତେ ଆସି ଶୁଭକ୍ଷଣେ ।'
ଜୀବର ଜୀବନ ତୁ' ମୋ ଆନନ୍ଦର ଖଣି
ହୃଦୟର ଅଳଙ୍କାର ନୟନର ମଣି ।
ନିଃଶ୍ୱାସ ପ୍ରଶ୍ୱାସ ବାବୁ ତୁ' ମୋ, ନାସିକାର
ଶ୍ରବଣେ ଶ୍ରବଣ ଶକ୍ତି ଦେହେ ରକ୍ତ ଧାର,
ରସନାର ସରସତା ମାନସ ଆସକ୍ତି
ଚର୍ମର ସ୍ପର୍ଶ ତୁ' ମୋ, କାର୍ଯ୍ୟର ପ୍ରଶସ୍ତି ।
ହୃତପିଣ୍ଡେ ତୁହି ମୋର ସଜୀବ ସ୍ପନ୍ଦନ
ତାପିତ ପରଶେ ପୁଣି ଶୀତଳ ଚନ୍ଦନ ।
କେତେ ଦୂରେ ରହିଛନ୍ତି ବାବୁରେ ତୋ' ତାତ
ତାଙ୍କୁ ଛାଡ଼ି କପାଁ ତୁହି ଆସିଲୁ ଏକାନ୍ତ ?
ଯେତେବେଳେ ହେଲେ କହୁ ହସି ହସି କଥା
ଆଜି ମନେ ଉପୁଜିଲା କି ଦାରୁଣ ବ୍ୟଥା ?
ପରିମ୍ଳାନ ଦିଶେ ମୁଖ ଅମଳ କମଳ
ଢଳ ଢଳ କପାଁ ବାବୁ ନେତ୍ରେ ନେତ୍ରଜଳ

ଜୀବନେ ଜନମେ ମୋର ଅତି ଉଦବେଗ-
ଶୁଣିବାକୁ ତୋ’ ବଚନ କହ ବାବୁ ବେଗ ।
ହୋଇଅଛି କରେ କିଛି ଅଶୁଭ ଘଟନ,
କହ କହ ବନ୍ଦନ’ ଭୁ ଆରେ ପ୍ରାଣଧନ ।’
ଶୋକେ ଦୁଃଖେ କ୍ଷୋଭେ ହୋଇ ମରମ ପୀଡ଼ିତ
ବାଷ୍ପରୁଦ୍ଧ କଣ୍ଠେ ଆସ୍ୟ କରି ଅଶ୍ରୁସିକ୍ତ,
ବୋଇଲା ବାଦଲ ‘ମାଗୋ ସେ ଶୋକ ବାରତା
କହିଲା ବେଳକୁ ମନେ ଜନମଇ ବ୍ୟଥା,
ନ’ କହି ସେ କଥା ପୁଣି ନ’ ହୁଏ ଠହର
ଶୋକ ଦେଉଅଛି ଏଣେ କଣ୍ଠରୋଧ କରି’ ।
କିଛି କ୍ଷଣ ପରେ କରି ଧୀରତା ଧାରଣ,
ଭାଷିଲା କରୁଣ କଣ୍ଠେ ବାଦଲ ଏସନ
‘ମାଆ ଗୋ ! ପ୍ରଚଣ୍ଡ ବେଗ ଝଞ୍ଜା ବାତ ସମ
ପ୍ରକାଶି ସମର କ୍ଷେତ୍ରେ ଅମର ବିକ୍ରମ,
ଅସଂଖ୍ୟ ଯବନ ସେନା ତରୁ-ପ୍ରାଣମୂଳ
ଉପାଡ଼ିଲେ କରି ତାତ ନିଃଶେଷ ନିର୍ମୂଳ ।
ଫେରିବାକୁ କରୁଥିବା ବେଳେ ଉପକ୍ରମ,
ଆସିଲା ଗୋଲକଟିଏ ଅନଳ ଉପମ,
ବାଜିବାରୁ ବେଗେ ପିତା ଲଲାଟ ପଟଳେ
ସଂଜ୍ଞା ଶୂନ୍ୟ ହୋଇ ପଡ଼ିଗଲେ ଭୂମିତଳେ ।
ବିଫଳତା ପ୍ରସବିଲା ଯାବତ ଯତନ
ଶେଷେ ହେଲା ତାହା ତାଙ୍କ ମରଣ କାରଣ ।’
ଏତେ କହି ଶୋକାବେଗେ କଲା ବିଳପନ
ନ ପାରିଲା ଫୁଟି ଆଉ ମୁଖରୁ ବଚନ ।
ବାଦଲ’ର ବାଣୀ ଶୁଣି ବାଦଲ-ଜନନୀ
ଶୋକଗ୍ରସ୍ତ ହେଲେ ଯଥା ହୃତମଣି-ଫଣୀ ।
ଅଶ୍ରୁଜଳେ ଧୈର୍ଯ୍ୟ ବନ୍ଧ ଭାଙ୍ଗି ଅଭାଗିନୀ
କ୍ରନ୍ଦନ ରୋଳରେ ଦେଲେ କମ୍ପାଇ ମେଦିନୀ

ଏହିପରି ବହୁକ୍ଷଣ କରି ସେ ରୋଦନ
ଶେଷେ ଚିତାନଳେ କଲେ ଆତ୍ମ ବିସର୍ଜନ ।



## ଦଶମ ସର୍ଗ

ଘୋର ଅନୁତାପେ ଆଜ ଯବନ-ଜୀବନ,
ହେଉଅଛି ଛଟଛଟ ଅହୋ କି' ଭୀଷଣ !
ତୀବ୍ର-ବିଷ ବିଷଧର ରୂପେ କ୍ଷୋଭ ଆସି-
ଦଂଶିଲା ଉତ୍କଟ ଭାବେ ତାଙ୍କ ବିଟେରଶି ।
ବୈରାଗ୍ୟ-ପଞ୍ଚଆସ୍ୟ ଘୋର ଘନ ଘୋଷେ,
ଆକ୍ରମି ବିବ୍ରତ କଲା ଗରଜି ସରୋଷେ ।
କ୍ଷିପ୍ର ଶିବା ପରି ହୋଇ ଲାଞ୍ଛନା ବାହାର,
କାମୋଡ଼ି ତା' ଦେହଯାକ କଲା ଛାରଖାର ।
ଅଶାନ୍ତି ଆସିଲା ଧରି ମଧୁମକ୍ଷୀ ବେଶ,
ଶକ୍ତି ମାରି ଦେଲା ତାକୁ ଯାତନା ଅଶେଷ ।
ଅଧିରତା ବ୍ୟାଘ୍ର କରି ବଦନ ବ୍ୟାଦାନ,
ଧାଇଁ ଆସି ଅଛି କରିବାକୁ ରକ୍ତପାନ ।
ନିଶ୍ଚିନ୍ତେ ଦୁଶ୍ଚିନ୍ତା ତହିଁ ହେଲା ଉପଗତ
ମାଇଲା ବିରୁଡ଼ି ରୂପେ ଅସ୍ତ୍ର ପାଶୁପତ ।
ନଖରଦ ଅସ୍ତ୍ର ମାରି ସ୍ୱେଚ୍ଛା ଭଲ୍ଲୁକୀ,
ଜନ୍ମାଇ ବିଷମ କ୍ଷତ ତହିଁ ଦେଲା ଥୁକି ।
ମାନସିକ ଅତ୍ୟାଚାରେ ସମ୍ରାଟ ଏପରି,
ହେଉଅଛି ପ୍ରପୀଡ଼ିତ ଦିବସ ଶର୍ବରୀ ।
ଗଢ଼ୁଥିଲା ମନେ ମନେ ଯେ ସୁଖ ଜଗତ,
ତାକୁ କଲା ବିଫଳତା, ଧ୍ୱଂସେ ପରିଣତ ।
ବ୍ୟାକୁଳତା ଜାଳି ଅତି ପ୍ରଚଣ୍ଡ ଜ୍ୱଳନ,
ପୋଡ଼ି ପକାଇଲା ଶାନ୍ତି ସୁବର୍ଣ୍ଣ ଭବନ ।

ଛଳ ବଳ କଉଶଳ କରି ହାହାକାର-
କରୁଛନ୍ତି ବିସର୍ଜନ, ଲୋତକ ଆସାର ।
ମହାକ୍ରୋଧେ ଜରଜର ହୋଇ ଦିଲ୍ଲୀଶ୍ୱର,
ପ୍ରତିଶୋଧ ନେବା ପାଇଁ ହେଲା ଅଗ୍ରସର ।
ଘୋଷିଲା ସରୋଷେ 'କ୍ରୁର ନାଗଟିଏ ମତେ,
ପକାଇଲା ଛନ୍ଦି ଏହି ଶୋଚମୀୟ ପଥେ ।
ଦେଖିବା ରାଜପୁତମାନେ କେତେ ବୁଦ୍ଧିମନ୍ତ
ରାଜପୁତ ଜାତି କେତେ ରଖିଛି ଶକତି ।
ଧନବଳ ଜନବଳ ଯା' ଅଛି ମୋହର
ନିୟୋଗି ତା' ଉତ୍ସାଦନ (୧) କରିବି ଚିତୋର ।
ପଦ୍ମିନୀ କି' ନେଇ, ରଖି ଦେବି ଅଶ୍ୱଶାଳେ
ଅଶ୍ୱମଳ ପକାଇବା ଅଛି ତା କପାଳେ ।
ଭୀମକୁ ରଖିବି ଆମ (୨) ଚର୍ମ-ବନ୍ଧ କରି,
ସଦ୍ୟ ଗୋରୁ ମାଂସ ଦେବି ତା' ବଦନେ ଭରି ।
ସୈନ୍ୟବୃନ୍ଦେ ଆଦେଶିଲା ଲଗାଇ ବଜ୍ରପାତ,
ଚିତୋରକୁ ଭୂମିସାତ କର ଅବଗତ ।
ଯେତେ ଦିନ ହେବ ନାହିଁ ସିଦ୍ଧ ମନୋରଥ
ଏ ସ୍ଥାନରେ ରଣ-ଚର୍ଯ୍ୟା କରିବା ତାବତ ।
ସମ୍ରାଟର ଦୃଢ଼ପଣ କରି ଆକର୍ଣ୍ଣନ
ରଚିଲେ ଭୀଷଣ ରଣ ତା' ସୈନିକ ଗଣ ।
ଚୂର୍ଣ୍ଣପରି କଲେ ଯାଇ ଦୁର୍ଗ ଅବରୋଧ,
ଲାଗିଲେ କମାଣମାନ ବହ୍ନି ବହୁ କ୍ରୋଧ ।
ଚୂର୍ଣ୍ଣୀଭୂତ ହେଉଅଛି କେତେ ଘର ଦ୍ୱାର,
ବିଷମ ବ୍ୟାପାର ହେଲା ପଥେ ଗୁଳବାର ।
ରହି ହେଉ ନାହିଁ ଘରେ ଅଥବା ବାହାରେ
ଚିତୋର ନଗରେ ପୂରିଗଲା ହାହାକାରେ ।

---

(୧) ଉତ୍ସାଦନ—ଧ୍ୱଂସ କରଣ (୨) ଆମ—କଞ୍ଚା

ଦେଖି ଏ ଦାରୁଣ ଦୃଶ୍ୟ ଭୀମ ଦୁଃଖ ଭରେ
ଭଗ୍ନ ଗୃହ ନାଟଶାଳେ ରଖିଲେ ନବରେ ।
କରିବାକୁ ଯବନର ପ୍ରତାପ ଦଳନ
କତୁକ୍ଷଣ ହୋଇଲା ଙ୍କର ଧ୍ୟାନ ନିମଗନ ।
ଲକ୍ଷ୍ମଣ ହେଉନ ତହିଁ ହୋଇ ଉପଗତ
ଦେଖିଲେ ସେ ବସିଛନ୍ତି ମୁଖ କରି ନତ ।
ପଦଶବ୍ଦ ଶୁଣି ଟେକି ଈଷତ ବଦନ
ସମ୍ବୋଧନ କରି ତାଙ୍କୁ ଡାକିଲେ ଲକ୍ଷ୍ମଣ ।
ଲକ୍ଷ୍ମଣଙ୍କୁ ଗୃହଁ ଭୀମ ହୋଇ ସମାସୀନ
ବୋଇଲେ ଆସିଲା ଶତ୍ରୁ ପରୀକ୍ଷାର ଦିନ ।
ବାବା ଆଜ ଧୈର୍ଯ୍ୟ ଧରି ହେବ ନାହିଁ ରହି
ଅସ୍ଥିରଚିତ୍ତ ଧୀରଜନେ କାପୁରୁଷ କହି ।
ଯେ କରେ ସମସ୍ତ ଗୃହଁ କର୍ମ ଆଚରଣ,
ଲକ୍ଷ୍ମୀ ତାଙ୍କୁ କରିଥାନ୍ତି ସାଦରେ ବରଣ,
କାଳୋଚିତ କର୍ମ ଯେହୁ ସାଧନେ ଅକ୍ଷମ,
ଜଗତରେ ସେହି ଜନ ପ୍ରକୃତ ଅଧମ ।
ଭୀଷଣ ସମୟ ବାବା ସମ୍ମୁଖେ ଆଗତ
ଏ ସମୟେ ଅବଲମ୍ବ ସମୁଚିତ ପଥ ।
ଲାଭାଲାଭ ଫଳାଫଳ ଈଶ୍ୱର ହାତରେ-
ଅର୍ପି ଅଗ୍ରସର ହୁଅ କର୍ତ୍ତବ୍ୟ ପଥରେ ।
ଅହରହ ଥାନ୍ତି ଯେହୁ କର୍ମ ପରାୟଣ,
ସହାୟ କେବଳ ଭବେ ତାଙ୍କ ପରାୟଣ * ।
ହେଲଣିତ ବାବା ତୁମ୍ଭେ ଏ ଥର ସମର୍ଥ
ଚିତୋର ଉଦ୍ଧାର ଅର୍ଥ କର ଦୃଢ଼ ବ୍ରତ ।'
ଲକ୍ଷ୍ମଣ ବୋଇଲେ 'ସେହି ଭାବନା କରତ,-
ହୋଇ ବସିଥିଲି ବହୁକ୍ଷଣ ଏ ଯାବତ ।

---

* ପରାୟଣ—ନାରାୟଣ

ତୁମ୍ଭଙ୍କୁ ଡ଼ାକବା ପାଇଁ ବଳୁଥିଲା ମନ
ଶୁଭ ମୁହୂର୍ତ୍ତରେ ଆସି ଦେଲ ଦରଶନ ।
ମୁହିଁ ତ ତୁମ୍ଭର ଛାତ୍ର ତୁମ୍ଭେ ମୋ ଶିକ୍ଷକ,
ତୁମ୍ଭ ଉପଦେଶଚୟ ମୋ ପାଠ୍ୟ-ପୁସ୍ତକ ।
ମୋ ଉପରେ ଏବେ ଲକ୍ଷ୍ୟ ଦେଇ ଗୁରୁବର,
ନିଶ୍ଚିନ୍ତ ରହିବା ତୁମ୍ଭ ପକ୍ଷେ ଅବିଚାର ।
ଯେତେବେଳେ କରିଅଛ ଯେପରି ଆଦେଶ,
ପାଳିବାରେ ତାହା ରଖି ନାହିଁ ଦୋଷ ଲେଶ ।
ସଂଶତାର ଏବେ ମୋର ହୋଇ କର୍ଣ୍ଣଧାର
କର ଏ ବିପଦ ରୂପ ଅକୂପାର ପାର ।’
ମୃଦୁ ହାସ୍ୟ ହେଁ ଶ୍ରୀମ ଭାଷିଲେ ଭରେଶ
‘ଲକ୍ଷଣ ! ବୃଦ୍ଧଙ୍କ ସୁଦ୍ଧା ନାହିଁ ଅବ୍ୟାହତ ।
ନାଶଶୀଳ ଦେହ ହେବ ଯେବେ ହେଲେ ନଷ୍ଟ
ଏ ସମୟେ କିପାଁ ହେବ କରଣୀୟ ଭ୍ରଷ୍ଟ ।
ବୀରତ୍ୱ ପ୍ରକାଶି ଯେବେ ମରଣ ବରଣ-
କରିବ, ତା’ହେଲେ ହେବ ଜୀବନ ମୋ ଧନ୍ୟ ।’
ପୁନଶ୍ଚ ବୋଇଲେ ‘ଆଉ ନାହିଁ ଅବସର,
ବିପଦ ଆସୁଛି ଧରି ମୂର୍ତ୍ତି ଭୟଙ୍କର,
କରିବାକୁ କାଳୋଚିତ ମାର୍ଗ ନିର୍ଦ୍ଧାରଣ,
ସମନ୍ତ୍ରିକ ହୋଇ ଚଳ ମନ୍ତ୍ରଣାଭବନ ।
ନାମଧର ବୀରେ ମଧ୍ୟ ଅବାହନ କର,
ଦେଖିବା ପରଖି ଅଭିରୁଚି ସଭିଙ୍କର ।
ଏବେ ମୁହିଁ ଅଗ୍ରସର ହେଉଛି ସେ ସ୍ଥାନେ
ନ କରି ବିଳମ୍ବ ଅତି ଆସ ତୁମ୍ଭେମାନେ ।
କିଛି କ୍ଷଣେ ଜନାକୀର୍ଣ୍ଣ ମନ୍ତ୍ରଣା ଭବନ,
ଧରି ମତ-ବିଶାରଦ ପାତ୍ର ମିତ୍ର ଗଣ ।
ସମୁଚ୍ଚ ଆସନେ ବସିଛନ୍ତି ରାଣା ହମ୍ବୁ,
ଯଥାଯୋଗ୍ୟ ଆସନରେ ଅନ୍ୟ ଲୋକଚୟ ।

ଗମ୍ଭୀରତା ବହିଅଛି ସକଳ ବଦନ,
ତା'ଉପରେ ବିଷାଦର କାଳିମା ଲେପନ ।
ହୋଇଅଛି ସମସ୍ତଙ୍କ ମତି ଚିନ୍ତାକୁଳ,
ବାଳକ ବାଦଲ୍ ମୁଖ କେବଳ ପ୍ରଫୁଲ୍ଲ ।
ରହିଛନ୍ତି ସର୍ବେ ହୋଇ ନୀରବ ନିଶ୍ଚଳ,
କଥା କହିବାକୁ ଯେହ୍ନେ ନାହିଁ କାହା ବଳ ।
ସହସା ଦେଖିଲେ ହେବ ମନରେ ପ୍ରତୀତ
ମାର୍ତ୍ତିକ * ମୂରତି ବସି ଏ'କ ଏକତ୍ରିତ ।
ନିଃଶ୍ୱାସ ପବନ ଆଉ ପଲକ ପତନ,
କରେ ସଜୀବତା ଚିହ୍ନ ତାରେ ପ୍ରକଟନ ।
ବହୁକ୍ଷଣ ଏହି ରୂପେ ହୋଇଗଲ୍ ଗତ,
ନୀରବତା ଭଙ୍ଗି ଭୀମ ଭାଷିଲେ ଏମନ୍ତ,
'କଠୋର ଦୁର୍ଦ୍ଦଶା ସର୍ବେ କରୁଛ ଦର୍ଶନ,
ଏ କାର୍ଯ୍ୟର କର୍ତ୍ତା ସେହି ଦୁରାତ୍ମା ଯବନ ।
ଜିଘାଂସାର ବଶବର୍ତ୍ତୀ ହୋଇ ସେ କେବଳ
ଅହୋରାତ୍ର ଘଟାଉଛି ଆମ୍ଭ ଅମଙ୍ଗଳ ।
ଯବନ ପ୍ରତାପ ଏବେ ସହନ ଅତୀତ
କି ଉପାୟ ଆଚରିବା ବିଚାର ଉଚିତ ।
ଭାଗ୍ୟ ପରୀକ୍ଷାର ଏହା ପ୍ରଶସ୍ତ ସମୟ
ଏଥିରୁ ଉତ୍ତୀର୍ଣ୍ଣ ହେଲେ ହେବ ଭାଗ୍ୟୋଦୟ ।'
ଭୀମଙ୍କ ବଚନ ଶୁଣି ପାର୍ଷଦ ମଣ୍ଡଳ
ବୋଇଲେ 'ତୁମ୍ଭେ ହିଁ ଆମ୍ଭ ସବୁ ବୁଦ୍ଧି ବଳ ।
ତୁମ୍ଭ ବିନା କେ କରିବ ଉପାୟ ଚିନ୍ତନ
କେ ଅବା କରି ପାରିବ ବିପଦ ଖଣ୍ଡନ ।
ତୁମ୍ଭେ ରାଜା ତୁମ୍ଭେ ଗୁରୁ ସର୍ବଦା ଆମ୍ଭର
ଭାଗ୍ୟ ବିଧାୟକ ତୁମ୍ଭେ ମନ୍ତ୍ରଣା ଆକର ।

---

* ମାର୍ତ୍ତିକ—ମାଟିମୂର୍ତ୍ତି

ବୁଦ୍ଧିରେ ତୁମ୍ଭର ଆମ୍ଭେ ସର୍ବେ ବୁଦ୍ଧିବାନ
କାର୍ଯ୍ୟ ତୁମ୍ଭ ଆମ୍ଭ କାର୍ଯ୍ୟବତ୍ତା ଉପାଦାନ
ତୁମ୍ଭେ ଯେ ପଥରେ ନେବ ଚଳିବୁ ସେ ପଥେ
ସହମତ୍ୟ ଅଛୁ ଆମ୍ଭ, ସଦା ତୁମ୍ଭ ମତେ ।
ଯାହା କରିବାକୁ ଏବେ ମଣନ୍ତି ଉଚିତ,
ସତ୍ୱର କରିବା ହେଉ ସୁମନ୍ତି-ପଣ୍ଡିତ ।'
ସଭାସଦ ବାକ୍ୟ ଶୁଣି ଦେଇ ପ୍ରତିଗୀର,
ବୋଇଲେ ଜଗତେ କିଛି ନୁହେଁ ଚିରସ୍ଥିର ।
ଧନଜନ ଦେହ ଗେହ ସବୁ କାଳାଧୀନ,
କାନ୍ତିମତୀ କୀର୍ତ୍ତି କିନ୍ତୁ ରହେ ଚିରଦିନ ।
ଜଗତରେ କୀର୍ତ୍ତି କରି ଅସି-ମସି ବେନି,
ନୁହେଁ ଥାନ୍ତି ଦୁହିଁଙ୍କର ସହାୟତା ବିନି ।
ଅସି ବ୍ୟବସାୟୀ ଆମ୍ଭେ ଧରି ତୀକ୍ଷ୍ଣ ଅସି,
ସ୍ଥାପନ କରିବା ମର୍ତ୍ତ୍ୟେ କୀର୍ତ୍ତି ମହୀୟସୀ
କରୁଥିବେ ଚିରକାଳ ଆମ୍ଭ ଗୁଣଗାନ
ନିଖିଳ ଭାରତବାସୀ ମାନବ ସନ୍ତାନ ।
ଅଜୟ ଅଟଇ ରାଣା ପ୍ରିୟତମ ଧନ,
କୈଳବାର ଦୁର୍ଗେ ତାକୁ କରିବା ପ୍ରେରଣ ।
କୈଳବାର ସୁଦୁର୍ଗମ ସ୍ଥାନେ ଅବସ୍ଥିତ
ସର୍ବଦା ଅରାତି ଅନ୍ତବଧି ବିରହିତ ।
ଅଜୟ ବହିବ ଭାବୀ ବଂଶରକ୍ଷା ଭାର
ଅନୁଯାୟୀ ହେବେ ଦୁର୍ଗ ବାଳବୃଦ୍ଧ ତାର ।
ସ୍ତନ୍ୟପାୟୀ ବାଳକର ଯେ' ଅଟେ ଜନନୀ
ତାଙ୍କ ସହଯାତ୍ରୀ ହୋଇପାରେ ସେ'ରମଣୀ ।
ଏ ବାହାରେ ଛନ୍ତି ଏଥେ ଯେତେକ ଗର୍ଭିଣୀ
ଇଚ୍ଛାକଲେ ହେବେ ତାଙ୍କ ପଶ୍ଚାତ ଗାମିନୀ ।
କାପୁରୁଷ ଭୀରୁ ଦୁର୍ଗେ ରହିଛନ୍ତି ଯେତେ
ଅନୁଚିତ ସେମାନଙ୍କ ରହିବା ଏ କ୍ଷେତେ ।

ଅବଶିଷ୍ଟ ରହିବେ ଆଉ ଯେତେ ଜନ,
ଅଦୃଷ୍ଟ ପରୀକ୍ଷା ପାଇଁ କରିବେ ଯତନ ।
ଫଳାଫଳ ଅର୍ପିଦେଇ ଈଶ୍ୱର ହସ୍ତରେ
ଯାଇ ଉପଗତ ହେବା ସମର କ୍ଷେତ୍ରରେ ।
ରହିଛି ଅପରିମିତ ବାହିନୀ ଯବନ,
ସ୍ତୋକ ସେନା ନେଇ କଲେ ତା'ସହିତ ରଣ
ନ ହେବ ବାସନା ସିଦ୍ଧ ଅବା କାର୍ଯ୍ୟୋଦ୍ଧାର,
ଉପହାସ ପାତ୍ର ହେବା ମାତ୍ର ହେବ ସାର ।
ଏକୀଭୂତ କରି ଏଣୁ ସମସ୍ତ ଶକତ
ଯୁଦ୍ଧ-ସଜ୍ଜ ଆଚରିବା ହୋଇ ଏକମତ ।
ପ୍ରାସାଦ ଉପରେ ରହି ଚତୋରୀ ମହିଳା,
ଦେଖୁଥିବେ ସ୍ଥିର ନେତ୍ରେ ଆମ୍ଭ ରଣ ଲୀଳା ।
ସମର ସଙ୍ଗୀତ ଗାଉଥିବେ ଅନିବାର
ରଚୁଥିବେ ପୁଷ୍ପେ ଆମ୍ଭପାଇଁ ଜୈତ୍ରହାର ।
ଜୟଶ୍ରୀ ଲଭିଲେ ତାହା ଦେବେ ଆମ୍ଭ ଗଳେ,
ନତୁବା ଫିଙ୍ଗିବେ ନେଇ ଜ୍ୱଳନ୍ତ ଅନଳେ ।
ତା ସଙ୍ଗେ ଆବରି କୁଳ ଧର୍ମ ସନାତନ
ପବିତ୍ର ଜହର-ବ୍ରତ କରିବେ ପାଳନ,
ଯବନ ହେଉରି କରି ସହସ୍ର ଉଦ୍ୟମ,
ରମଣୀ କେଶାଗ୍ର ସ୍ପର୍ଶେ ହେବ ନାହିଁ କ୍ଷମ ।
କମ୍ଭା ଯେବେ ଯବନର ହୋଇ କ୍ରୀତଦାସ,
ରହିବା ତା ହେଲେ ବେଗେ ଯାଇ ତାର ପାଶ,
ନିଜନିଜ ରମଣୀଙ୍କ କରି ଅରପଣ
କ୍ଷମା ମାଗି ପଶିବା, ତା' ଚରଣେ ଶରଣ ।
ଶେଷୋକ୍ତ ବଚନେ ସର୍ବେ ସରୋଷେ ଗରଜି
ଛିଡା ହେଲେ ନିଜ ନିଜ ଆସନ ବରଜି ।
ବୋଇଲେ 'ଏ କଥା ହେବ ନାହିଁ କଦାଚିତ,
ରହିଥିବା ଯାଏ ଆମ୍ଭେ ଯାବତ ଜୀବିତ ।

ସହସା ଗୃଞ୍ଜଲ୍ୟ ତହିଁ ହେଲା ସଞ୍ଚାରିତ,
ସେ ଉଚ୍ଚ ପ୍ରସାଦ ହେଲା ଉଚ୍ଚ ମୁଖରିତ,
ତହୁଁ ସର୍ବେ ହୋଇ ଏକ ପ୍ରାଣ ଏକମନ
ଶ୍ରୀମ ମୁଖ ବାକ୍ୟାବଳୀ କଲେ ସମର୍ଥନ ।
ଯଥାକାଳେ କରିବାକୁ ଆଦେଶ ପାଳନ,
ଅଙ୍ଗୀକାର କରିଗଲେ ସଭାସଦ ଗଣ ।
ଖେଳିବାର ପ୍ରସ୍ତୁତ କଲେ ଅଜସ୍ର ବିଜୟୁ
ସଙ୍ଗେ ଧରି ଦୁର୍ଗବାସୀ ବାଳ ବୃଦ୍ଧଚୟୁ
ତାଙ୍କ ସଙ୍ଗେ ଗଲେ କେତେ ଦେଶିଣୀ କାମିନୀ
ଶିଶୁ ପୁତ୍ର ବକ୍ଷେ ଧରି କେତେ ନିତମ୍ବିନୀ ।
ଚଳିଲେ ଅଳପ ସେନା ଅଜସ୍ର ତହୁଣ,
କରିବାକୁ ଆକସ୍ମିକ ବିପଦ ଖଣ୍ଡନ ।
ନିରବେ ସର୍ବେ ଚଳିଲେ ଦ୍ରୁତେ ଅବିରତ
ରଜନୀ ଅନ୍ଧାରେ ଏକ ଗୋପନୀୟ ପଥେ ।
ଚିତ୍ତାରଏ ହୋଇ ଏଣେ ଯୁଦ୍ଧାର୍ଥ ପ୍ରସ୍ତୁତ,
ରାଜଦ୍ୱାର ଦେଶେ ଯାଇ ହେଲେ ପୁଞ୍ଜୀଭୂତ ।
ଧରଣୀ କମ୍ପାଇ ବାଜେ କେତେ ବୀରବାଦ୍ୟ
ବୀର ବକ୍ଷ ନାଚି ଉଠେ ଶୁଣି ସେ ନିନାଦ ।
ବୀର ଯୋଗ୍ୟ ବେଶେ ସାଜେ ସର୍ବ ଅପଘନ
ସେବ ଭରେ କରୁଛନ୍ତି କେତେ ବିଚରଣ ।
ଅସ୍ତ୍ର କଉଶଳ କେହ୍ନେ କରେ ପ୍ରଦର୍ଶନ
ବେନି ହସ୍ତେ କରି ବେନି କୃପାଣ ଧାରଣ ।
ବାହୁରେ ଆସ୍ଫୋଟ ମାରି ବୀରଦର୍ପ ବହି,
ଉପରକୁ ଡେଇଁ ପଡୁଛନ୍ତି କେତେ ତହିଁ ।
ମାରି ହେଉଛନ୍ତି କେତେ ଶୂନ୍ୟେ ଶୂନଚିତ
ହେଉଛନ୍ତି ସେହି କ୍ଷଣି ପୁଣି ଦଣ୍ଡାୟିତ ।
ପଛ ପଟେ କରି କଏ ମସ୍ତକ ଘୂର୍ଣ୍ଣନ,
ଦେଖାଇ କୌଶଳ ଅନ୍ୟ ମୁଗ୍ଧକରେ ମନ ।

ଉପରକୁ ପାଦ ଟେକ ନତ କରି ଶିର,
ହାତେ ଚଳ ଯାଉଛନ୍ତି ତହିଁ କେତେ ବୀର ।
କରନ୍ତି କୃତ୍ରିମ ଯୁଦ୍ଧ ଆଉ କେତେଜଣ
ଶୂଳ, ଭଲ୍ଲ, ଅସି କରି ସଂଯତେ ଗ୍ରହଣ ।
ଚନ୍ଦ୍ର କ୍ରୀଡ଼ା କରୁଛନ୍ତି କେତେ ଚନ୍ଦ୍ରଧର
ଶୂନ୍ୟ ଦେଶେ ଫିଙ୍ଗି ଚନ୍ଦ୍ର ଛୁଅନ୍ତି ସତ୍ୱର ।
ଅଶ୍ୱ ଦଉଡ଼ାଇ କେହ୍ବ ଅଶ୍ୱାରୋହୀ ଆଗେ
ଅହ୍ମାଘାତେ କ୍ଷିପ୍ର ଲେମ୍ବୁ କାଟେ ସମଭାଗେ ।
ପ୍ରଧାବତ ତୁରଙ୍ଗମ ପୃଷ୍ଠେ କେବା ଥାଇ
ନେଉଅଛୁ ଭୂପତିତ ଶିରସ୍ତ ଗୋଟାଇ ।
ସିନ୍ଦୂର ଚର୍ଚିତ ବହୁ କରିବର ଶିର,
ଆଚ୍ଛାଦିତ ବହୁମୂଲ୍ୟ ବାସେ ଯା' ଶରୀର ।
ଶୁଣି ହସ୍ତ ହସ୍ତିପକେ ତା' ମସ୍ତକେ ବସି,
ଗାଆନ୍ତି ସରସ ଗୀତ ହରଷ ବରଷି
ମହାକାୟ ଗଜବ୍ରଜ ସେ ଗୀତ ଶ୍ରବଣେ
କର୍ଣ୍ଣତାଳ ଦେଉଥାନ୍ତି ମହାମୋଦ ମନେ ।
ମନ୍ଦ ଗନ୍ଧ ବହେ ହୋଇ ଆନନ୍ଦ ମଗନ
ଉଡ଼ଇ କେତନବ୍ରଜ ଗଗନେ ସଘନ ।
ଶର ଗଜ ଭକ୍ତ ଭଲ୍ଲଧାରୀ ଭଲ୍ଲ ଗଣ,
ଆସି ସମବେତ ହେଲେ ତହିଁ ଅଗଣନ ।
ଲେଙ୍ଗୁଟିରେ ଭିଡ଼ା ହୋଇଅଛୁ କଟିତଟ,
ଦିଶେ ତା * ପ୍ରକଟ କରେ ସୁଗଠିତ ଘଟ ।
ସୁରଙ୍ଗ-ବହଙ୍ଗ-ପର--ବିଚିତ୍ର ଟୋପି
ବହିଛନ୍ତି ନିଜ ନିଜ ମସ୍ତକେ ଅଟୋପି ।
କପର୍ଦ୍ଦ ଜଡ଼ିତ ଗୁରୁ କାରୁ କର୍ମମୟ
ତନୁ ତ୍ରାଣେ ଆବରିତ ଦୃଢ଼ କାୟତୟ ।

* ଭଟ--ବୀର, ଯୋଦ୍ଧା

ମାଳସୂତ୍ର ଗୁଚ୍ଛ ବାହୁମଧ୍ୟେ ବିମଣ୍ଡିତ,
ଶ୍ରବଣେ ମଣ୍ଡଳାକାର ଭୂଷା ଦୋଳାୟିତ ।
କାଣ୍ଡ ପୃଷ୍ଠପର, ପୃଷ୍ଠେ କାଣ୍ଡ ପୂର୍ଣ୍ଣ ନଳ
ଲମ୍ବିତ କୋଦଣ୍ଡ ଦଣ୍ଡ ଶୋଭେ କନ୍ଧସ୍ଥଳ ।
ବକ୍ଷରେ ଶୋଭଇ ଗୁରୁ ଗରଗଡ଼ ମାଳ
ଗୈରିକ ରାଗରେ ଦିଶେ ଉଜ୍ଜ୍ୱଳ କପାଳ ।
ଖଡ୍ଗରେ ଭୂଷିତ ଶ୍ରୋଣି * ଶ୍ରେଣୀ ପାଦ ଦେଶ
ଗୁଳଗଲେ ରୁଣ୍ଡୁ ଝୁଣ୍ଡୁ ଶୁଭଇ ବିଶେଷ ।
ଏ ସମସ୍ତେ ସର୍ବୋତ୍ତମ ଲକ୍ଷଣ ସମ୍ପନ୍ନ
ପହଞ୍ଚିଲେ ବୀର ବେଶେ ପ୍ରବୀର ଲକ୍ଷ୍ମଣ ।
ଗୁଳଛନ୍ତ ପଛେ ତାଙ୍କ କୁଳ ଆଭରଣ
ସ୍ୱଧର୍ମ ପାଳନକ୍ଷମ ପ୍ରିୟ ପୃହଗଣେ ।
ଆସିଗଲେ ଶ୍ୟାମ ସିଂହ ବାଦଲ ସହିତ
କାଳୋଚିତ ବେଶ ଭୂଷା ଅଙ୍ଗେ ବିଭୂଷିତ
ଉତ୍ସାହ ରସରେ ହେଲ ପ୍ରାୟେ ରସାଣିତ,
ସକଳ ବଦନ ଦିଶୁଅଛି ପ୍ରଫୁଲ୍ଲିତ ।
ବନ୍ଦାପନାଥାଳି ଧେନ ଭୁବନ ମୋହିନୀ
ମୀରା ସହ ଉପଗତ ଏ କାଳେ ପଦ୍ମିନୀ ।
ତାଙ୍କ ପଛେ ପଛେ ଆସି ହେଲେ ଏକତ୍ରିତ,
କୁଳବଧୂକୁଳ ଗାଇ ସମର ସଙ୍ଗୀତ ।



* ଶ୍ରୋଣି—କଟି ଦେଶ

# ସମର ସଂଗୀତ

ଯୁଦ୍ଧବିଳାସୀ ଚଟଚାର ନିବାସୀ ଉଠ ଉଠ ବେଗ କରିହେ,
ଅରାତି ରକ୍ତ ପିପାସାସକ୍ତ ଦୀପ୍ତ ଖଡ୍‌ଗ ଧରି ହେ ॥ ଘୋଷା ॥

ଦୁଷ୍ଟମାନସେ ହୁଅ ପ୍ରବିଷ୍ଟ ଇଷ୍ଟ ସାଧନ ପାଇଁ ହେ,
ଅତି ପବିତ୍ର ସମର କ୍ଷେତ୍ର ରହିଅଛି ପଥ ଚାହିଁହେ । ୧ ।

ଦୁରନ୍ତ ଅରି ରକ୍ତରେ କର ଅନୁରଞ୍ଜିତ ଅସି ହେ,
ଦର୍ପୀ ଦର୍ପ ବିଦଳିତ କରି ମୁଖେ ତାର ଘସ ମସି ହେ । ୨ ।

ପିତୃପାଳିତ ମହା ମହିମିତ ଧର୍ମକୁ ଅନୁସର ହେ,
ଜନ୍ମ ଭୂମିର ହିତ ଅର୍ଥରେ କର୍ମ ବହନ କର ହେ । ୩ ।

ବୀର ବିଶ୍ରୁତ ସାନ୍ତନୁସୁତ କର୍ଣ୍ଣାର୍ଜୁନ ରାମ ହେ,
ଯେ ପଥେ ପଥିକ ଚଳି ସେହି ପଥେ ସାର୍ଥକ ନିଜ ନାମ ହେ । ୪ ।

ମର୍ତ୍ତ୍ୟ ଭୁବନେ ଯଶ ଅମର୍ତ୍ତ୍ୟ ରଖିଯାଅ ଚିର କାଳ ହେ,
ଗାଉଥିବେ ଯାହା ଭାବୀ ଭାରତର ବୃଦ୍ଧ ବନିତା ବାଳ ହେ । ୫ ।

କି ଅଛି ଶକ୍ତି କର ହେ ବ୍ୟକ୍ତି କ୍ଷାତ୍ର ଶୋଣିତ ବିନ୍ଦୁର,
ଦେଖୁ ଏଇ ଲୋକ ଅତି ଲୌକିକ କାର୍ଯ୍ୟ କଳାପ ହିନ୍ଦୁର । ୬ ।

ଜନନୀ-ବକ୍ଷ-ଅଲକ୍ଷ୍ୟ-ବଳ-ବିଧାୟକ ଯେଉଁ ସ୍ତନ୍ୟ ହେ,
ପାନକରି ଭୂରି କାର୍ଯ୍ୟ ବହ୍ନିଛ ଦେଖାଇ ହୁଅ ତା ଧନ୍ୟ ହେ । ୭ ।

ମାତୃ ଜାତିର ମାତୃକ୍ଷିତିର ଉଜ୍ଜ୍ୱଳକର ମୁଖ ହେ,
ବୀର ବିକ୍ରମେ ବିନାଶି ବୈରି ବିଦୂରିତ କର ଦୁଃଖ ହେ । ୮ ।



ଲଳନା ଲଳିତ କଣ୍ଠେ ଶୁଣି ଏ ସଙ୍ଗୀତ,
ଏକକାଳେ ସର୍ବଚିତ୍ତ ହେଲା ତରଳିତ ।
ଜୟ ଏ କଳିଙ୍ଗ ଜୟ କରି ଉଚ୍ଚାରଣ,
ଅତି ଉଲ୍ଲାସରେ କଲେ ଗଗନ କମ୍ପନ ।
ସହସା ଉଠିଲା ଜିଣି ଜଳଧି କଲ୍ଲୋଳ
ଦୁନ୍ଦୁଭି, ପଟହ, ତୂରୀ ଆଦି ବାଦ୍ୟ ରୋଳ ।
ବହୁ ଉନ୍ମାଦନା ଢାଳି ବୀରଙ୍କ ଜୀବନେ,
ବହୁ ଦୂର ବ୍ୟାପିଗଲା ପବନାରୋହଣେ ।
ଗ୍ରାମେ ବନ୍ଦାପନା କଲେ ଚନ୍ଦ୍ରିମା ସୁନ୍ଦରୀ
ଦୂର୍ବାକ୍ଷତ ପୁଷ୍ପ ଦୀପ ଆଦି କରେ ଧରି ।
ଲକ୍ଷ୍ମଣେ ସେପରି କଲେ ତତକ୍ଷଣେ ମୀରା,
ସର୍ବଗୁଣ ବିଭୂଷିତା ନାରୀକୁଳ ହୀରା ।
ଚକୋର ଈଶ୍ୱରୀ, ଏକ ଲିଙ୍ଗ ନାମ ସ୍ମରି,
ଚଢ଼ିଲେ ସକଳେ ନିଜ ଯୋଗ୍ୟ ଯାନୋପରି ।
ମହାନନ୍ଦେ ମହୋତ୍ସାହେ ହୋଇ ଉଦ୍ବେଳିତ,
ରଣଭୂମି ଅଭିମୁଖେ ଚଳିଲେ ତ୍ୱରିତ ।
ପୁରାଙ୍ଗନାଗଣ ପଥ ପାର୍ଶ୍ୱ ସୌଧେ ଥାଇ
ଦେଇ ହୁଳହୁଳି, ମଧୁମୟ ଗୀତ ଗାଇ,
ସୁରଭିତ ପୁଷ୍ପାଞ୍ଜଳି କରି ବରଷଣ,
ଜଣାଇଲେ ବୀରବର୍ଗେ ସ୍ୱ ଅଭିବାଦନ ।

